



# ଆମ ସ୍ତନ୍ୟପାୟୀ ପ୍ରାଣୀଜଗତ

ଲେଖିକା : ସୁମେଧା ମିଶ୍ର

ପ୍ରକାଶକ :
ତତ୍ତ୍ୱମସୀ ପବ୍ଲିକେସନ,
କାନନ ବିହାର, ଭୁବନେଶ୍ୱର



ପ୍ରକାଶ କାଳ :
୨୦୦୧



ମୁଦ୍ରଣ :
ସାଥୀ ଅଫ୍‌ସେଟ୍,
ଓଡ଼ିଆ ବଜାର, କଟକ

ମୂଲ୍ୟ : ଟ.୫୦/-




# ସୂଚୀପତ୍ର

# ହାତୀ

## Elephants

ହାତୀ ବୃହଦାକାର ଆକାରର ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ମଧ୍ୟରେ ଅନ୍ୟତମ । ଆଫ୍ରିକୀୟ ଅଣ୍ଡିରା ହାତୀର ଉଚ୍ଚତା ସାଧାରଣତଃ ତିନି ଦଶମିକ ଦୁଇମିଟରରୁ ଚାରି ମିଟର ଏବଂ ଓଜନ ପ୍ରାୟ ଛ'ଟନ ହୋଇଥାଏ । ମାଈ ହାତୀ ଅଣ୍ଡିରା ହାତୀଠାରୁ ଉଚ୍ଚତା ଏବଂ ଓଜନ ଉଭୟରେ କମ୍ । ମାଈ ହାତୀର ଓଜନ ପ୍ରାୟ ଚାରିଟନ ହୋଇଥାଏ । ବିଷୁବରେଖା ସନ୍ନିକଟବର୍ତ୍ତୀ ଜଙ୍ଗଲରେ ବାସ କରୁଥିବା ହାତୀ ତଥା ଆମ ଦେଶରେ ଦେଖାଯାଉଥିବା ହାତୀ ଆଫ୍ରିକୀୟ ହାତୀ ତୁଳନାରେ ଛୋଟ ଏବଂ ଏମାନଙ୍କର କାନ ଗୋଲାକାର । ବୃହଦାକାର କାନ ତାକୁ ଉଷୁମ ରଖିବାରେ ବିଫଳ ହୁଏ । ହାତୀ ତାର କାନଗୁଡ଼ିକୁ ପଙ୍ଖା ରୂପେ ବ୍ୟବହାର କରେ ।

ଆଫ୍ରିକାରେ ବାସ କରୁଥିବା ହାତୀଙ୍କର ସଂଖ୍ୟା ପଚାଶ ହଜାର । ଆକାର ଅନୁସାରେ ଏମାନଙ୍କର କ୍ଷୁଧା ଶକ୍ତି ନିର୍ଣ୍ଣୟ ହୁଏ । ବୟସ୍କ ହାତୀ ଦିନକୁ ଏକଶହ ପଚାଶ କିଲୋଗ୍ରାମ ଓଜନର ଖାଦ୍ୟ ଆବଶ୍ୟକ କରେ । ତେବେ ଖାଦ୍ୟ ଗୁଣାତ୍ମକ ନୁହେଁ । ପେଟର ଅନ୍ତ ଖାଦ୍ୟକୁ ଭାଙ୍ଗିବାରେ ସାହାଯ୍ୟ କରେ । ଖାଦ୍ୟର ଅଧା ଅଂଶ ହଜମ ନହୋଇ ନଷ୍ଟ ହୁଏ । ଏମାନେ ଖାଇବାରେ ପ୍ରତି ଚବିଶ ଘଣ୍ଟାରୁ ଷୋଳ ଘଣ୍ଟା ସମୟ ନଷ୍ଟ କରୁଥିବାର ଦେଖାଯାଏ । ଘାସ, ଡାଳ, ପତ୍ର ଇତ୍ୟାଦି ହାତୀମାନଙ୍କ ପ୍ରଧାନ ଖାଦ୍ୟ । ଏମାନଙ୍କର ତୃଷା ନିବାରଣ ପାଇଁ ଆବଶ୍ୟକ ପାଣିର ପରିମାଣ ଖୁବ୍ ଅଧିକ । ଗୋଟିଏ ବୟସ୍କ ହାତୀ ଦିନକୁ ହାରାହାରି ଅଶି ଲିଟର ପାଣି ପିଏ ।

ହାତୀ ଶୁଣ୍ଢ ସାହାଯ୍ୟରେ ସଂଗୃହୀତ ଖାଦ୍ୟ ଏବଂ ପାଣିକୁ ପେଟ ଭିତରକୁ ନିଏ । ଏହାର ନାକ ଏବଂ ପାଟି ପାଖାପାଖି ଥାଏ । ହାତୀ ତା ଶୁଣ୍ଢ ସାହାଯ୍ୟରେ ପାଣି ସଂଗ୍ରହ କରେ ଏବଂ ନିଜ ଶରୀର ଉପରକୁ ଜୋରରେ ପକାଏ । ହାତୀଗୁଡ଼ିକର ଗାଧୋଇବାର ଏହା ଏକ ସହଜ ଉପାୟ । ନିଜ ନିଜ ମଧ୍ୟରେ ସମ୍ପର୍କ ରଖିବା ପାଇଁ ଶୁଣ୍ଢ ସାହାଯ୍ୟରେ ବିକଟାଳ ଶବ୍ଦ କରନ୍ତି । ହାତୀ ନିଜ ଶୁଣ୍ଢର ଉପର ଅଂଶ ଅନ୍ୟ ହାତୀର ପାଟିରେ ଭର୍ତ୍ତିକରି ପରସ୍ପରକୁ ଆଲିଙ୍ଗନ କରିବା ଏକ ବୈଚିତ୍ର୍ୟ । ମାଈହାତୀ ଶାବକମାନଙ୍କର ଶରୀରରେ ଶୁଣ୍ଢକୁ ଲଗାଇ ଦେଇ ସାନ୍ତ୍ୱନା ଦିଅନ୍ତି । ଶୁଙ୍ଘାଇବା ଏବଂ ଛୁଇଁବା ଦ୍ୱାରା ସେମାନେ ନିଜର ପାରିପାର୍ଶ୍ୱିକ ଅବସ୍ଥା ଜାଣିପାରନ୍ତି ।

ଅଣ୍ଡିରା ହାତୀ ସାଧାରଣତଃ ଏକାକୀ ରହିବାକୁ ଭଲପାଏ । କେତେକ କ୍ଷେତ୍ରରେ ଛୋଟ ଛୋଟ ଅଣ୍ଡିରା ହାତୀକୁ ଏକାକୀ ଦେଖିବାକୁ ମିଳେ । ମାଈ ହାତୀ ଦଳରେ ରହିବାକୁ



ହାତୀ Elephant

ପସନ୍ଦ କରେ । ମାଈ ହାତୀ ସାଥିରେ ଛୋଟ ଛୁଆଗୁଡ଼ିକୁ ରଖେ । ବୁଢ଼ା ହୋଇଗଲେ, ଅଣ୍ଡିରା ହାତୀ ଦଳ ଛାଡ଼ି ଚାଲିଯାଏ । କିନ୍ତୁ ଅନ୍ୟ ଅଳ୍ପ ବୟସର ହାତୀ ସେମାନଙ୍କର ମା' ମାନଙ୍କ ସହିତ ଚଳପ୍ରଚଳ ହୁଅନ୍ତି । ଦଳର ବୟସାଧିକ୍ୟ ଏବଂ ବୃହଦାକାର ମାଈ ହାତୀ ଦଳକୁ ଆୟତ୍ତ କରି ରଖେ । ନିଜ ଇଚ୍ଛା ଅନୁସାରେ କେଉଁ ସ୍ଥାନକୁ ଯିବ, କେଉଁ ସ୍ଥାନକୁ ଯିବ ନାହିଁ, ତାହା ନିର୍ଦ୍ଧାରଣ କରେ । ଶତ୍ରୁ ଆକ୍ରମଣ ସମୟରେ ନିଜକୁ ଏବଂ ଦଳକୁ କିପରି ରକ୍ଷା କରିବ; ତାହା ସ୍ଥିର କରେ ।

ସାଧାରଣତଃ ବର୍ଷାଋତୁରେ ଅଣ୍ଡିରା ଓ ମାଈ ହାତୀ ଏକତ୍ରିତ ହୋଇଥାନ୍ତି । ଗର୍ଭଧାରଣର ୨୨ ମାସ ପରେ ଛୁଆ ଜନ୍ମ ହୁଏ । ଜନ୍ମ ସମୟରେ ଛୋଟ ହାତୀର ଓଜନ ପ୍ରାୟ ଏକଶହ କୋଡ଼ିଏ କିଲୋଗ୍ରାମ ହୋଇଥାଏ । ଏଗୁଡ଼ିକ ପାଟି ସାହାଯ୍ୟରେ ମା' କ୍ଷୀର ଶୋଷି ପିଅନ୍ତି । ଏଥିପାଇଁ ଶୁଣ୍ଢକୁ ବ୍ୟବହାର କରନ୍ତି ନାହିଁ । ସେମାନେ ସାଧାରଣତଃ ଦୁଇବର୍ଷ ପର୍ଯ୍ୟନ୍ତ ମା'ଠାରୁ କ୍ଷୀର ପିଅନ୍ତି । ଜନ୍ମ ହେବାର କିଛିମାସ ପରେ ଗଛ ଖାଇବାକୁ ଅଭ୍ୟାସ କରନ୍ତି । ପନ୍ଦର ବର୍ଷ ବୟସ ହେବା ପର୍ଯ୍ୟନ୍ତ ଏମାନଙ୍କର ଦ୍ରୁତ ବୃଦ୍ଧି ଘଟେ; ଏହାପରେ ଶରୀରର ବୃଦ୍ଧି ଧୀରେ ଧୀରେ କମିଯାଏ । ଏମାନଙ୍କ ଆୟୁ ପ୍ରାୟ ୬୦ ବର୍ଷ । ହାତୀର ଦାନ୍ତ ଦୁଇଟା ଧୀରେ ଧୀରେ ବଢ଼େ । ଦାନ୍ତଗୁଡ଼ିକ ପୂରା ବଢ଼ିଗଲାପରେ ଆକୃତିରେ ବିରାଟ ହୋଇଯାଏ । ସବୁଠାରୁ ଲମ୍ବା ଦାନ୍ତର ଲମ୍ବ-ତିନି ଦଶମିକ ପାଞ୍ଚମିଟର୍ ହୋଇଥିବା ଲକ୍ଷ୍ୟ କରାଯାଇଛି । ଦୁଇ ଦାନ୍ତର ଓଜନ ମଧ୍ୟ ଦୁଇଶହ ଏଗାର କିଲୋଗ୍ରାମ ହୋଇଥିବା ଜଣାଯାଇଛି । କେତେକ ମାଈ ହାତୀର ଦାନ୍ତ ଅତି ଛୋଟ । ଓଠ ବାହାରକୁ ସାମାନ୍ୟ ବାହାରିଥାଏ । ଦାନ୍ତଗୁଡ଼ିକ ସାଧାରଣତଃ ଭୟ ଦେଖାଇବାରେ ଏବଂ ଯୁଦ୍ଧ କରିବାରେ ବ୍ୟବହାର କରନ୍ତି । ହାତୀ ଖାଦ୍ୟ ଚୋବାଇବାରେ ଗାଲରେ ଥିବା ଦାନ୍ତ ବ୍ୟବହାର କରେ । ବୁଢ଼ା ହାତୀର ପାଟିରୁ ଦାନ୍ତ ଖସିପଡ଼ିଲେ ସେ ଭୋକିଲା ରହେ ।

ହାତୀଗୁଡ଼ିକୁ ପ୍ରଶିକ୍ଷଣ ମାଧ୍ୟମରେ ବିଭିନ୍ନ କାମରେ ବ୍ୟବହାର କରାଯାଏ । ମାଈ ହାତୀ ସହଜରେ ପ୍ରଶିକ୍ଷଣକୁ ଗ୍ରହଣ କରେ । ଏସୀୟ ମହାଦେଶୀୟ ହାତୀ ଆଫ୍ରିକା ମହାଦେଶର ହାତୀଠାରୁ ଅଧିକ ସହଜରେ ପ୍ରଶିକ୍ଷଣ ଗ୍ରହଣ କରନ୍ତି । ହାତୀଗୁଡ଼ିକର ଦାନ୍ତ ବିଭିନ୍ନ ଗହଣା ତିଆରିରେ ବ୍ୟବହାର ହୁଏ । ଏହା ଅତ୍ୟନ୍ତ ମୂଲ୍ୟବାନ । ଏଣୁ ହାତୀର ଦାନ୍ତ ସଂଗ୍ରହ କରିବା ଲକ୍ଷ୍ୟରେ ବେଆଇନ ଭାବରେ ଅନେକ ହାତୀ ଶିକାର କରନ୍ତି । ଶିକାରୀମାନେ ପ୍ରତିବର୍ଷ ହଜାର ହଜାର ସଂଖ୍ୟାର ହାତୀ ଶିକାର କରିବାର ପ୍ରମାଣ ଅଛି । ଶିକାରୀମାନଙ୍କର ମନଇଚ୍ଛା ଶିକାର ଦ୍ୱାରା ହାତୀର ବଂଶ ଲୋପ ହେବାକୁ ବସିଲାଣି ।

# ବାଦୁଡ଼ି

## Bats

ବାଦୁଡ଼ି ଏକ ଉଡ଼ନ୍ତା ସ୍ତନ୍ୟପାୟୀ ପ୍ରାଣୀ । ବାଦୁଡ଼ି ଉଡ଼ିପାରୁଥିବାରୁ ଏହାକୁ ଉଡ଼ନ୍ତା ମୂଷା କୁହାଯାଏ । ପକ୍ଷୀମାନଙ୍କ ପରି ନିଜର ଡେଣାକୁ ବାଡ଼େଇ ଏହା ଉଡ଼ିପାରେ । ମେରୁ ଅଞ୍ଚଳ ବ୍ୟତୀତ ପ୍ରାୟ ଏକହଜାର ଶ୍ରେଣୀର ବାଦୁଡ଼ି ପୃଥିବୀର ସବୁ ଅଞ୍ଚଳରେ ବାସ କରନ୍ତି । ଏମାନେ କାହାରି କ୍ଷତି କରନ୍ତି ନାହିଁ । ବରଂ କୀଟ ପତଙ୍ଗ ନଷ୍ଟ କରିବାରେ ଏବଂ ଫଳ ଗଛ ତଥା ଅନ୍ୟାନ୍ୟ ଗଛର ପରାଗସଙ୍ଗମରେ ସାହାଯ୍ୟ କରନ୍ତି ।

ସାଧାରଣତଃ ବାଦୁଡ଼ିର ଲମ୍ବ ମୁଣ୍ଡଠାରୁ ଦେହ ପର୍ଯ୍ୟନ୍ତ ୨.୦୯ ସେ.ମି. ଏବଂ ଏହାର ଓଜନ ୧.୫ଗ୍ରାମ୍ । Flying Faxes ଜାତୀୟ ବାଦୁଡ଼ିର ଲମ୍ବ ୪୦ ସେ.ମି. ଏବଂ ଓଜନ ୧.୫ କିଲୋ ହୋଇଥାଏ ।

ବାଦୁଡ଼ିର ଡେଣା ପତଳା ଝିଲ୍ଲୀରେ ତିଆରି । ଚାରୋଟି ଲମ୍ବା ଏବଂ ହାଡୁଆ ଆଙ୍ଗୁଳି ଦ୍ୱାରା ନିଜର ଓଜନ ବହନ କରିଥାଏ । ବୁଢ଼ା ଆଙ୍ଗୁଳିଟି ଆକାରରେ ଛୋଟ, ଦେଖିବାକୁ ପଞ୍ଝାପରି ଏବଂ ଆଗକୁ ବାହାରିଥାଏ । ବସା ଚାରିପଟେ ବୁଲିବା ସମୟରେ ବୁଢ଼ା ଆଙ୍ଗୁଳିକୁ ବ୍ୟବହାର କରିଥାଏ । ଡେଣାର ଝିଲ୍ଲୀଟି ଗୋଡ଼ ପର୍ଯ୍ୟନ୍ତ ଲମ୍ବିଥାଏ । କେତେକ କ୍ଷେତ୍ରରେ ଡେଣାର ଝିଲ୍ଲୀ ଗୋଡ଼ରୁ ଲାଞ୍ଜ ପର୍ଯ୍ୟନ୍ତ ବ୍ୟାପିଥାଏ । ମୂଷାଲାଞ୍ଜିଆ ବା 'ଲେସର ବାଦୁଡ଼ି'ର ଲାଞ୍ଜଟି ଖୋଲାଥାଏ । ବାଦୁଡ଼ିମାନଙ୍କର ଗୋଡ଼ଗୁଡ଼ିକ ସାଧାରଣତଃ ଦୁର୍ବଳ । ପାଦରେ ପାଞ୍ଚଟି ଆଙ୍ଗୁଠି ଥାଏ ଏବଂ ପଞ୍ଝା ସହିତ ସଂଶ୍ଳିଷ୍ଟ ହୋଇଥାଏ ।

ବାଦୁଡ଼ି ବସା ଗୁଡ଼ିକ ତଳ ଅଂଶରେ ଅଥବା ଉପର ଅଂଶରେ ପାଦ ସାହାଯ୍ୟରେ ଝୁଲି ରହନ୍ତି । ଗୁମ୍ଫା, ପୁରୁଣା ଅନ୍ଧାରୁଆ କୋଠା ଏବଂ ଗଛ ବାଦୁଡ଼ିମାନଙ୍କର ପ୍ରିୟ ବାସସ୍ଥଳୀ । ଏହି ବସାରେ ସେମାନେ ଦିନବେଳା ଶୋଇ ରହନ୍ତି । ସନ୍ଧ୍ୟା ସମୟରେ ନିଜର ଖାଦ୍ୟ ଅନ୍ୱେଷଣରେ ବସାରୁ ବାହାରି ଆସି ବିଭିନ୍ନ ଅଞ୍ଚଳକୁ ଯାଆନ୍ତି । ଅଧିକାଂଶ ବାଦୁଡ଼ି ନିଜର ଡେଣାରେ କୀଟପତଙ୍ଗ ବୋହି ବସାରେ ଖାଆନ୍ତି । ସେମାନଙ୍କର ଆଖିଗୁଡ଼ିକ ଛୋଟ । ଦୃଷ୍ଟିଶକ୍ତି ମଧ୍ୟ ତୀକ୍ଷ୍ଣ ନୁହେଁ । ରାତିରେ ଦେଖିବାପାଇଁ ଶବ୍ଦ ଉପରେ ପ୍ରାୟତଃ ନିର୍ଭର କରନ୍ତି । ରାତିରେ ଖାଦ୍ୟ ଅନ୍ୱେଷଣ ସମୟରେ ଜୋରରେ ରଡ଼ି କରନ୍ତି । ରଡ଼ିର ପ୍ରତିଧ୍ୱନି ପାଇବା ପରେ ରଡ଼ିର କ୍ଷିପ୍ରତା ବଢ଼ାଇଦିଅନ୍ତି । ଏହି ପ୍ରତିଧ୍ୱନି ମାଧ୍ୟମରେ କୀଟପତଙ୍ଗଙ୍କର ସ୍ଥିତି ଜାଣିପାରନ୍ତି । ସେହି ସ୍ଥାନକୁ ଯାଇ କୀଟ ପତଙ୍ଗଙ୍କୁ ଆକ୍ରମଣ କରନ୍ତି । ସେମାନଙ୍କୁ ପାଟିରେ ଧରି ନିଜର ଡେଣାରେ ବୋହିଆଣନ୍ତି ।

'ନାଟରର' ଜାତୀୟ ବାଦୁଡ଼ି ଲାଞ୍ଜର ଝିଲ୍ଲୀ ଦ୍ୱାରା କୀଟ ପତଙ୍ଗକୁ ଶିକାର କରନ୍ତି । ଶିକାର ପୂର୍ବରୁ ଧ୍ୱନୀ ଅଥବା ରଡ଼ି ଖୋଲାପାଟି ଅଥବା ନାକପୁଡାରୁ ସୃଷ୍ଟି କରନ୍ତି । ବାଦୁଡ଼ିର କାନ ଗୁଡ଼ିକ ସାଧାରଣ କାନପରି ନୁହେଁ । କାନଗୁଡ଼ିକ ଆକାରରେ ବଡ଼, ଅଣଓସାରିଆ ଏବଂ ଭଙ୍ଗୀଳ ।

କେତେକ ବାଦୁଡ଼ି ମାଂସାଶୀ । ସେମାନେ ବେଙ୍ଗ, ମୂଷା ଇତ୍ୟାଦି ଭୋଜନ କରନ୍ତି । ଅଧିକାଂଶ ବାଦୁଡ଼ି ଗଛ ଡାଳରେ ଝୁଲି ରହନ୍ତି; କେତେକ ଗଛ କୋରଡ଼ରେ ବାସ କରନ୍ତି । କେତେକ ପୁରୁଣା ଘରେ ମଧ ବାସ କରିବାର ଦେଖାଯାଏ । ସାଧାରଣତଃ ଅଣ୍ଡିରା ଏବଂ ମାଈ ବାଦୁଡ଼ି ବର୍ଷର ସବୁ ସମୟରେ ଏକାଠି ବାସ କରନ୍ତି । କେତେକ ବାଦୁଡ଼ି ଅଛନ୍ତି ଯେଉଁମାନେ ସମଲିଙ୍ଗୀ ବାଦୁଡ଼ିଙ୍କ ସହିତ ବାସ କରନ୍ତି । ଅଣ୍ଡିରା ଏବଂ ମାଈ ବାଦୁଡ଼ିର ସହବାସ ବସାରେ ହୁଏ । ପାରିପାର୍ଶ୍ୱିକ ପରିସ୍ଥିତିକୁ ନେଇ ମାଈ ବାଦୁଡ଼ି ସହବାସର ସାତମାସ ଗର୍ଭଧାରଣ କରେ । ଛୁଆ ଜନ୍ମ ହେବା ପରେ ମା ଠାରୁ କ୍ଷୀର ଖାଇବା ଆରମ୍ଭ କରିଦିଏ । ଛୁଆ ଜନ୍ମ ସମୟରେ ମାଈ ବାଦୁଡ଼ି ସାଧାରଣତଃ ନିଜର ମୁଣ୍ଡକୁ ଉପରକୁ କରେ ଏବଂ ଲାଞ୍ଜର ଝିଲ୍ଲୀରେ ଛୁଆକୁ ଧରିରଖେ ।

ଉଷ୍ମ ସ୍ଥାନମାନଙ୍କରେ ବାଦୁଡ଼ି ବର୍ଷସାରା କର୍ମଠ ରହେ । କ୍ରାନ୍ତି ବଳୟରେ ବାସକରୁଥିବା ବାଦୁଡ଼ି ଅତ୍ୟଧିକ ଗରମ ସମୟରେ ହିଁ ଶୁଏ । ଥଣ୍ଡା ଜଳବାୟୁରେ ବାଦୁଡ଼ିମାନଙ୍କର ଖାଦ୍ୟ ସଂଗ୍ରହ ବାଧାପ୍ରାପ୍ତ ହୁଏ । ସୁତରାଂ, ବାଧହୋଇ ବାସକରୁଥିବା ସ୍ଥାନ ତ୍ୟାଗକରି ଅନ୍ୟ ସ୍ଥାନକୁ ଚାଲିଯାଏ । ସେଠାରେ ଖାଦ୍ୟ ସଂଗ୍ରହ କରେ, ଖୁସିରେ ରହେ ।

♦



# ବଣ ମଇଁଷି

## Wild Cattle

ବଣ ମଇଁଷି ବଣୁଆ ଗୋମହିଷାଦି ଏଗାର ଗୋଟା ଜାତି ମଧ୍ୟରୁ ଅନ୍ୟତମ । ଗୃହପାଳିତ ଗୋମହିଷାଦିଙ୍କ ପରି ଏମାନେ ସ୍ତନ୍ୟପାୟୀ । ସମସ୍ତ ଜାତିର (ଶ୍ରେଣୀର) ବଣୁଆ ଗୋରୁ ଏସିଆ, ଆଫ୍ରିକା ଏବଂ ଇଉରୋପରେ ବାସ କରନ୍ତି । ଏମାନଙ୍କୁ 'ବାଇସନ' କୁହାଯାଏ ଏବଂ ଆମେରିକା ମହାଦେଶରେ ବାସ କରନ୍ତି । ବଣ ମଇଁଷି ଜଙ୍ଗଲରେ ବାସ କରନ୍ତି । ଘାସ ଖାଇ ବଞ୍ଚନ୍ତି । ଇଉରୋପୀୟ ବଣୁଆ ମଇଁଷି ମଧ୍ୟ (ବାଇସନ) ଜଙ୍ଗଲରେ ବାସ କରେ ଏବଂ ଅନ୍ୟମାନଙ୍କ ପରି ଘାସ, ଛୋଟ ଡାଳ ଏବଂ ଗଛର ଛେଲି ଖାଇ ବଞ୍ଚେ । ଆମେରିକୀୟ ବଣୁଆ ମଇଁଷି (ବାଇସନ) ଟାଙ୍ଗରା ଅଞ୍ଚଳ (ବୃକ୍ଷ ଶୂନ୍ୟ) ଏବଂ ଜଙ୍ଗଲରେ ବାସ କରୁଥିବାର ଲକ୍ଷ୍ୟ କରାଯାଏ । ଘାସ ଏମାନଙ୍କର ପ୍ରିୟ ଖାଦ୍ୟ । ଆଫ୍ରିକୀୟ ବଣୁଆ ମଇଁଷି କଅଁଳିଆ ଘାସ ଖାଏ ।

ଏମାନେ ତୃଣଭୂମି, ଖୋଲା ପଡ଼ିଆ ଏବଂ ମରୁଭୂମିରେ ରହିବାକୁ ପସନ୍ଦ କରନ୍ତି । ଘାସ, କେତେକ ଛେଲି, ପତ୍ର, ଫଳ ଏମାନଙ୍କ ପ୍ରଧାନ ଖାଦ୍ୟ । ସହବାସର ୧୧½ ମାସର ଗର୍ଭଧାରଣ ପରେ ଏକ କିମ୍ବା ଦୁଇଟି ସନ୍ତାନ ଜନ୍ମ ଦିଅନ୍ତି । ସ୍ତ୍ରୀମାନେ ଜନ୍ମ ଦେବା ପରେ ପରେ ସହବାସ କରନ୍ତି ।

ଏମାନଙ୍କର ଦେହର ଲମ୍ବ ପ୍ରାୟ ୨ ମିଟର ଏବଂ ଲାଞ୍ଜ ୪୯ ସେ.ମି. । ଓଜନ ୨୭୫-୩୫୦କିଲୋ ଗ୍ରାମ୍ ମଧ୍ୟରେ ରୁହେ । ଜୀବନକାଳ ପ୍ରାୟ ୨୫ ବର୍ଷ ।

ପ୍ରାୟ ସବୁ ସମୟରେ ଏମାନେ ବଡ଼ ବଡ଼ ଦଳରେ ରହିବାକୁ ଭଲ ପାଆନ୍ତି । ଜଙ୍ଗଲ, ତୁନ୍ଦ୍ରାଞ୍ଚଳରେ ତିବ୍ବତ ଦେଶର ଚମରୀ ବଳଦର ଚଳଣି ସାଧାରଣ ଚଳଣିଠାରୁ ଭିନ୍ନ । ତିବ୍ବତର ଚାରି ହଜାର ମିଟର ଉଚ୍ଚ ସ୍ଥାନରେ ଏମାନେ ଚଳପ୍ରଚଳ ହୁଅନ୍ତି । ଏମାନଙ୍କ ଶରୀର ଗହଳିଆ ଏବଂ ଅପରିଷ୍କାର ଘନ କଳା ବାଳ ଦ୍ୱାରା ଆବୃତ । ଘନ କଳା ବାଳ ଏମାନଙ୍କୁ ଉଷୁମ ରଖିବାରେ ସାହାଯ୍ୟ କରେ ।

ବଣୁଆ ମଇଁଷିଙ୍କର ଲମ୍ବା ଦାନ୍ତମାଢ଼ୀ ଏବଂ ଦାନ୍ତ ଥାଏ । ଦାନ୍ତଗୁଡ଼ିକ ଚୋବାଇବାରେ ସାହାଯ୍ୟ କରେ । ଏମାନଙ୍କ ଥୋମଣିର ଶେଷ ଭାଗ ଓସାରିଆ । ଓଠ ଚାରିପଟେ ଚମଡ଼ା ଘେରି ରହିଥାଏ । ଏହା ଗଦି ସଦୃଶ । ନାକପୁଡ଼ା ଗୁଡ଼ିକ ଲମ୍ବାଳିଆ । ଏମାନଙ୍କର ଶୁଙ୍ଘିବା ଶକ୍ତି ପ୍ରଖର । ସେମାନଙ୍କ ଶୁଙ୍ଘିବା ଶକ୍ତି ଶତ୍ରୁମାନଙ୍କ ଖୋଜି ବାହାର କରିବାରେ ଏବଂ ଖାଦ୍ୟ ଅନ୍ୱେଷଣରେ ସାହାଯ୍ୟ କରେ । ଚରିବା ସମୟରେ ଶୁଙ୍ଘି ମନ ପସନ୍ଦିଆ ଘାସ



ବଣ ମଇଁଷି Wild Cattle

ଖୋଜି ବାହାର କରନ୍ତି ଏବଂ ଖୁସି ମନରେ ଖାଆନ୍ତି । ଏମାନଙ୍କର ଦୃଷ୍ଟି ଶକ୍ତି ଏବଂ ଶ୍ରବଣ ଶକ୍ତି ତୀକ୍ଷ୍ଣ ନୁହେଁ, ବରଂ ସାଧାରଣ । ବିପଦର ସୂଚନା ପାଇଲେ, ବିସ୍ଫୋରକ ଶିଘାଣି ନାକରୁ ବାହାରକରେ ଏବଂ ମୁଣ୍ଡକୁ ଉପରକୁ ଟେକିଦିଏ । ଅନ୍ୟମାନଙ୍କୁ ଏହି ଇଙ୍ଗିତ ସାହାଯ୍ୟରେ ସତର୍କ କରାଇଦିଏ । ବିପଦ ସମୟରେ ନିଜ ଶରୀରକୁ ଭିଡ଼ା ଓଟରା କରିପକାଏ । ବିପଦ ସମୟରେ ଆଫ୍ରିକୀୟ ବଣ ମଇଁଷି ସତର୍କତା ସୂଚକ ସାଙ୍କେନା ଦ୍ୱାରା ଅନ୍ୟ ସାଥୀମାନଙ୍କୁ ଏକତ୍ର କରାଏ ।

ସମସ୍ତ ପ୍ରକାର ବଣ ମଇଁଷିଙ୍କର ଦୁଇଟି ଶିଙ୍ଘ । ଅଣ୍ଡିରା ମଇଁଷିଙ୍କର ଶିଙ୍ଘର ଆକୃତି ବଡ଼ । ଶିଙ୍ଘକୁ ଶିଙ୍ଘ ସହିତ ଯୋଡ଼ି ନିଜ ନିଜ ମଧ୍ୟରେ ଲଢ଼େଇ କରନ୍ତି । ନିଜର ଆତ୍ମରକ୍ଷା ପାଇଁ ଶିଙ୍ଘକୁ ଅସ୍ତ୍ର ରୂପେ ବ୍ୟବହାର କରନ୍ତି । ଆଫ୍ରିକୀୟ ବଣୁଆ ମଇଁଷିର ଶିଙ୍ଘରେ ବହୁତ ହାଡ଼ ଥାଏ । ହାଡ଼ଗୁଡ଼ିକ ଖପୁରୀ ଚାରିପଟେ ଚାଳ ଘରର ମଥାନ ସଦୃଶ ଦେଖାଯାଏ । ଏହି ମଥାନଟି ହାଡ଼ର ବହୁଳତା ଦୃଷ୍ଟିରୁ ନିଦା । ଶିଙ୍ଘ ଦୁଇଟି ମଥାର ମଝି ଭାଗରୁ ବାହାରିଥାଏ । ମଥାନଟି ଟୋପି ପରି ଦେଖାଯାଏ । ଗୋଟିକିଆ ବଣ ମଇଁଷିକୁ ଶତ୍ରୁ ସୁବିଧାରେ ଆକ୍ରମଣ କରିପାରେ । କିନ୍ତୁ ଦଳ ମଧ୍ୟରେ ଥିଲେ ଏଗୁଡ଼ିକ ନିରାପଦରେ ରହନ୍ତି । ଦଳ ଗୁଡ଼ିକରେ ଅନ୍ଧ, ଛୋଟା ଏବଂ ତିନିଗୋଡ଼ିଆ ବଣୁଆ ମଇଁଷି ନିରାପଦରେ ବାସ କରନ୍ତି । ବଣୁଆ ମଇଁଷିର ଆକ୍ରମଣରୁ ସିଂହ, ବାଘ ମଧ୍ୟ ରକ୍ଷା ପାଇପାରନ୍ତି ନାହିଁ ।

ମାଈ ମଇଁଷି ଦଳଗତ ଜୀବନଯାପନ କରେ । ତିନିବର୍ଷର ହେଲେ ଅଣ୍ଡିରା ବାଛୁରୀ ଦଳରୁ ଅଲଗା ହୋଇଯାଏ । ଦଳରେ ଦଶରୁ କୋଡ଼ିଏ ବଣ ମଇଁଷି ଦେଖିବାକୁ ମିଳେ । ପ୍ରସବ ଋତୁରେ ଗୋଟିଏ ଦଳ ଅନ୍ୟ ଦଳ ସହିତ ମିଶି ଏକାଠି ରହନ୍ତି ।

ଏହାଦ୍ୱାରା ମାଈ ମଇଁଷି ନିରାପଦରେ ରହେ । ବୟସ୍କ ଅଣ୍ଡିରା ମଇଁଷି ଦଳରେ ବର୍ଷସାରା ରହିପାରେ, କିମ୍ବା ଏକୁଟିଆ ରହିପାରେ । ଇଚ୍ଛାନୁସାରେ କେବଳ ଅଣ୍ଡିରା ମଇଁଷିଙ୍କ ମେଳରେ ରହେ । ସହବାସ ସମୟ ଆସିଲେ ଅଣ୍ଡିରା ମଇଁଷି ମାଈ ମଇଁଷିର ମେଳକୁ ଫେରିଆସେ । ପ୍ରସବ ସମୟରେ ଅଣ୍ଡିରା ମଇଁଷି ମାଈ ମଇଁଷିର ପାଖେ ପାଖେ ରହେ ଏବଂ ଅନ୍ୟ ଅଣ୍ଡିରା ମଇଁଷିଙ୍କ ଠାରୁ ତାକୁ ଦୂରେଇ ରଖେ । ୨୫୪-୩୪୦ଦିନର ଗର୍ଭଧାରଣ ପରେ ମାଈ ମଇଁଷି ଛୁଆ ଦେଇଥାଆନ୍ତି । ସବୁଠାରୁ ସାନ ବଣମଇଁଷିର ଆକାର ଲମ୍ବ ୧.୫ମିଟରେ, କାନ୍ଧ ଉଚ୍ଚତା ୦.୭ ମିଟର । ଓଜନ ୧୫୦ କିଲୋ । ବୃହତ୍ତମ ମଇଁଷିର ଲମ୍ବ ୭ ମିଟର, ଉଚ୍ଚତା ୨ ମିଟର ଏବଂ ଓଜନ ୯୪୦ କିଲୋ ।

ଆମେରିକୀୟ ବଣ ମଇଁଷି କ୍ରୋଧାନ୍ୱିତ ହେଲେ ଧୂଳିରେ ଗଡ଼େ ଏବଂ ନିଜର ଦେହକୁ ତଳେ ଆଗପଛ କରି ଘଷେ । ପ୍ରତିଦ୍ୱନ୍ଦ୍ୱୀର ନିକଟବର୍ତ୍ତୀ ହେଲେ ମୁଣ୍ଡକୁ ଉପରକୁ କରିଦିଏ ।

ଅଥବା ଏକପାଖିଆ ସିଧା ସଳଖ ଠିଆହୁଏ । ଦରକାର ପଡ଼ିଲେ ପ୍ରତିଦ୍ୱନ୍ଦୀ ସାଥିରେ ଲଢ଼େଇ କରେ । ଲଢ଼େଇ ସମୟରେ ନିଜର ମୁଣ୍ଡକୁ ପ୍ରତିଦ୍ୱନ୍ଦୀର ମୁଣ୍ଡ ସିହତ ଜୋରରେ ପିଟେ । ଶିଙ୍ଗ ଦ୍ୱାରା ନିଜ ନିଜ ମଧ୍ୟରେ ଲଢ଼େଇ କରନ୍ତି । ଲଢ଼େଇ ତୀବ୍ର ହୁଏ । ଲଢ଼େଇରେ ପ୍ରତ୍ୟେକ ଖଣ୍ଡିଆ ଖାବରା ହୁଅନ୍ତି । ଏହି କ୍ଷତ (ଖଣ୍ଡିଆ) ତା'ର ମୃତ୍ୟୁର କାରଣ ମଧ୍ୟ ହୋଇପାରେ । ଅଧିକାଂଶ ବଣ ମଇଁଷିକୁ ପୋଷା ଯାଉଛି । ତିବ୍ବତର ଚମରୀ ଗାଈକୁ ଭାର ବୋହିବାରେ ବ୍ୟବହାର କରାଯାଉଛି । କେତେକକୁ ବିଲରେ ଚାଷ କାମରେ ଲଗାଯାଉଛି । ଏମାନଙ୍କଠାରୁ କ୍ଷୀର ଏବଂ ଲହୁଣୀ ମିଳିପାରୁଛି । ମଣିଷର ନିଷ୍ଠୁରତା ଏମାନଙ୍କର ସଂଖ୍ୟା କମିବାର ପ୍ରଧାନ କାରଣ । ଏମାନଙ୍କର ଜୀବନକାଳ ହାରାହାରି ବୟସ ୨୦ବର୍ଷ ।





# ନେଉଳ

## Mangooses

ସାଧାରଣତଃ ଏକତିରିଶ ପ୍ରକାରର ନେଉଳ ଦେଖାଯାନ୍ତି। ସେଥିମଧ୍ୟରୁ କୋଡ଼ିଏ ପ୍ରକାରର ନେଉଳ ଆଫ୍ରିକାରେ ବସବାସ କରନ୍ତି। ମାଡାଗାସ୍କାରରେ ଚାରି ପ୍ରକାର ଏବଂ ଦକ୍ଷିଣ ଏସିଆରେ ସାତ ପ୍ରକାରର ନେଉଳ ବସବାସ କରନ୍ତି। ସେମାନେ ମାଂସାଶୀ, କ୍ଷିପ୍ର ଏବଂ କର୍ମଠ। ଅଧିକାଂଶ ନେଉଳ ଭୂପୃଷ୍ଠରେ ବାସ କରନ୍ତି।

ନେଉଳ ସାପମାନଙ୍କର ଶତ୍ରୁ। ସାପ ଗୁଡ଼ିକୁ ନିଜର କ୍ଷିପ୍ରତା ଏବଂ ସତର୍କତା ବଳରେ ବାରମ୍ବାର ଆଘାତ କରି ମାରି ଦିଅନ୍ତି। ନେଉଳ-ସାପ ଲଢେଇ ଦୀର୍ଘ ସମୟ ଧରି ଚାଲେ ଏବଂ ନେଉଳ ସାପର ବେକକୁ ଦାନ୍ତଦ୍ୱାରା ଆଘାତ କରି ସାପକୁ ଦୁର୍ବଳ କରିପକାଏ ଏବଂ ମାରିବା ପର୍ଯ୍ୟନ୍ତ ଲଢେଇ ଚାଲୁରହେ।

ନେଉଳ ଛୋଟ ଜୀବକୁ ଶିକାର କରି ନିଜର କ୍ଷୁଧା ନିବାରଣ କରେ। କେତେକ ମଧ୍ୟ କୀଟ ପତଙ୍ଗକୁ ମାରି ଖାଦ୍ୟ ରୂପେ ବ୍ୟବହାର କରନ୍ତି। କେତେକ ନେଉଳ କଙ୍କଡା ଏବଂ ବେଙ୍ଗ ଖାଇ ବଞ୍ଚନ୍ତି। କେତେକ ଜାତିର ନେଉଳ ଅନ୍ୟ ପ୍ରାଣୀମାନଙ୍କର ଅଣ୍ଡାକୁ ପଥରକୁ ଫିଙ୍ଗି ଭାଙ୍ଗି ଦିଅନ୍ତି ଏବଂ ଅଣ୍ଡାର ପୁଷ୍ଟିକର ଅଂଶକୁ ଖାଇ ଦିଅନ୍ତି।

ଅଧିକାଂଶ ନେଉଳ ଏକାକୀ ହଳ ହଳ ହୋଇ ବାସ କରନ୍ତି। ରାତିରେ ଲୁଚି ଛପି ଶିକାର କରିବାକୁ ପସନ୍ଦ କରନ୍ତି। ''ବାଣ୍ଡେଡ଼'' ଜାତୀୟ ନେଉଳ ଦିନରେ କର୍ମଠ। ପଛରେ ଗୋଡାଇ ଆକ୍ରମଣ କରୁଥିବା ନେଉଳଠାରୁ ନିଜକୁ ନିଜେ ରକ୍ଷା କରିବା ପାଇଁ ଚେଷ୍ଟା କରେ। ଭାରତୀୟ ନେଉଳ ଦେଖିବାକୁ ଛୋଟ। ଭାରତୀୟ ନେଉଳକୁ ହାୱାଇ ଦ୍ୱୀପ ଏବଂ ୱେଷ୍ଟଇଣ୍ଡିଜକୁ ମୂଷା, ଚୁଚୁନ୍ଦ୍ରା ପ୍ରଭୃତି ମାରିବା ଲକ୍ଷ୍ୟରେ ପଠାଯାଇଥିଲା। ଦୁର୍ଭାଗ୍ୟର ବିଷୟ ଭାରତୀୟ ନେଉଳ ଉପରୋକ୍ତ ସ୍ଥାନରେ ସେହି ସ୍ଥାନର ପ୍ରାଣୀମାନଙ୍କୁ ମାରି ସେମାନଙ୍କ ବଂଶ ଲୋପ କଲେ। ସେହି ସ୍ଥାନରେ ଭାରତୀୟ ନେଉଳ ସମସ୍ୟା ହୋଇପଡ଼ିଲେ।





ନେଉଳ Mangooses

# ବଜ୍ର କାପ୍ତା

## Pangolins

ବଜ୍ର କାପ୍ତା ସ୍ତନ୍ୟପାୟୀ। ଏହାର ଶରୀରରେ ଥିବା କାତିଗୁଡ଼ିକ ପରସ୍ପରକୁ ଚାପି ଧରିଥା'ନ୍ତି। ପିମ୍ପୁଡି ଏବଂ ଉଈ ଏମାନଙ୍କର ପ୍ରିୟ ଖାଦ୍ୟ। ଏମାନଙ୍କର ଦାନ୍ତ ନଥିଲେ ମଧ୍ୟ ପାକସ୍ଥଳୀର ଥିବା କଠିନ ଏବଂ ଧାରୁଆ ଅଂଶ ସାହାଯ୍ୟରେ ଖାଦ୍ୟ ଗୁଣ୍ଡ କରି ଖାଇଦିଅନ୍ତି।

ଛୋଟ ଆକାରର ବଜ୍ର କାପ୍ତାର ଦେହର ଲମ୍ବ ୩୦ ସେ.ମି. ଓ ଲାଞ୍ଜ ୫୫ ସେ.ମି. ହୋଇଥିବାବେଳେ ଓଜନ ହୋଇଥାଏ ୧.୨ କିଲୋଗ୍ରାମ୍। ତେବେ ବଡ଼ ଆକାରର ବଜ୍ର କାପ୍ତାର ଦେହର ଲମ୍ବ ୮୫ ସେ.ମି. ଓ ଲାଞ୍ଜ ୮୦ ସେ.ମି. ହୋଇଥିବାବେଳେ ଓଜନ ହୋଇଥାଏ ୩୩ କିଲୋଗ୍ରାମ୍। ଏମାନଙ୍କର ଦେହର ରଙ୍ଗ ଈଷତ୍ ଧୂସର ହଳଦିଆ ରଙ୍ଗରୁ ଆରମ୍ଭ ହୋଇ ଗାଢ଼ ଧୂସର ରଙ୍ଗର ମଧ୍ୟ ହୋଇଥାଏ।

ସାଢେ ଚାରି ମାସର ଗର୍ଭ ଧାରଣ ପରେ ମାଈ ବଜ୍ରକାପ୍ତା ଏକକାଳୀନ ମାତ୍ର ଗୋଟିଏ ଛୁଆ ଜନ୍ମ ଦେଇଥାଏ।

ଏମାନେ ଆଫ୍ରିକା ଏବଂ ଏସିଆରେ ବାସ କରନ୍ତି। କ୍ରାନ୍ତି ଅଞ୍ଚଳର ଘଞ୍ଚ ଜଙ୍ଗଲ ଏବଂ ଖୋଲା ଜଙ୍ଗଲରେ ବାସ କରିବାର ଦେଖାଯାଏ। ସାଧାରଣତଃ ଏକୁଟିଆ ରହିବାକୁ ଏମାନେ ଭଲ ପାଆନ୍ତି। ବର୍ଷା ହେଉଥିବା ଆଫ୍ରିକାର ଜଙ୍ଗଲ ଦୁଇ ଶ୍ରେଣୀର ବଜ୍ର କାପ୍ତାଙ୍କ ବାସସ୍ଥଳୀ। ସେହି ଅଞ୍ଚଳରେ ଥିବା ଗଛରେ ଏଗୁଡ଼ିକ ବାସ କରନ୍ତି। ରାତିରେ ଏମାନେ ବେଶ କର୍ମଠ। ବଡ ଲାଞ୍ଜୁଆ ବଜ୍ରକାପ୍ତା ଗଛର ତଳ ଅଂଶରେ ଥିବା ଡାଳରେ ଅଧିକାଂଶ ସମୟ ଅତିବାହିତ କରେ। ଦୁଇ ଜାତିର ବଜ୍ରକାପ୍ତାଙ୍କର ଲାଞ୍ଜ ଲମ୍ବା। ଲାଞ୍ଜର ଶେଷ ଭାଗରେ କିଛି ଅଂଶ ସଂବେଦନଶୀଳ ଏବଂ ପଟି ସଦୃଶ । ଏହା ସାହାଯ୍ୟରେ ଗଛ ଚଢିବାରେ ସୁବିଧା ହୁଏ।

ଆଫ୍ରିକା ମହାଦେଶରେ ଅନ୍ୟ ଦୁଇଟି ଜାତିର ବଜ୍ରକାପ୍ତା ବାସ କରନ୍ତି। ସେମାନେ ମାଟି ଭିତରେ ବସା କରିବା ଦେଖାଯାଏ। ଆକାରରେ ମଧ ସାମାନ୍ୟ ବଡ । ସେମାନଙ୍କୁ ଯଥାକ୍ରମେ ''କେପ'' ଏବଂ ''ଜିଆଣ୍ଟ'' ବଜ୍ରକାପ୍ତା କୁହାଯାଏ। ସେମାନଙ୍କ ଶରୀରର ଅଗ୍ରଭାଗରେ ଥିବା ପଞ୍ଝା ଖୁବ୍ ଶକ୍ତ। ଏହି ପଞ୍ଝା ସାହାଯ୍ୟରେ ଉଈବସା ଏବଂ ପିମ୍ପୁଡି ବସା ଭାଙ୍ଗି ଉଈ ଏବଂ ପିମ୍ପୁଡିକୁ ଭୋଜନ କରନ୍ତି। ''ଜିଆଣ୍ଟ'' ବଜ୍ରକାପ୍ତାର ଜିଭ ସମୟେ ସମୟେ ସତୁରି ସେ.ମି. ଲମ୍ବ ହୋଇଥାଏ। ଗୋଟିଏ ରାତିରେ ଦୁଇଲକ୍ଷ ପିମ୍ପୁଡି



ବଜ୍ର କାପ୍ତା Pangolins

ଖାଇବାର କ୍ଷମତା ଏମାନଙ୍କର ଅଛି। ଏସିଆ ମହାଦେଶର ବଜ୍ରକାପ୍ତା ସାଧାରଣତଃ କେନ୍ଦ୍ରୀୟ ଏବଂ ଦକ୍ଷିଣ ଭାରତ, ଦକ୍ଷିଣ ଚୀନ, ମାଲେସିଆ ଏବଂ ଇଣ୍ଡୋନେସିଆରେ ବହୁସଂଖ୍ୟାରେ ବାସ କରନ୍ତି। ଭାରତ, ଚୀନ ଏବଂ ମାଳୟ ଦେଶରେ ବାସ କରୁଥିବା ବଜ୍ରକାପ୍ତା ଦେଖିବାକୁ ଏକା ପ୍ରକାରର। ସାଧାରଣତଃ ଏଗୁଡ଼ିକ ଭୂପୃଷ୍ଠରେ ବାସ କରନ୍ତି; କିନ୍ତୁ ଗଛ ଚଢିବାରେ ମଧ ଧୂରନ୍ଧର। ଆଫ୍ରିକୀୟ ବଜ୍ରକାପ୍ତାଙ୍କର ଲାଞ୍ଜର ଶେଷ ଭାଗରେ ଥିବା କାତି ଅନ୍ୟ ବଜ୍ରକାପତାଙ୍କ କାତିଠାରୁ ସମ୍ପୂର୍ଣ୍ଣ ଭିନ୍ନ। ଆଫ୍ରିକୀୟ ବଜ୍ରକାପ୍ତାଙ୍କର ଲାଞ୍ଜ ଶେଷ ଅଂଶରେ ଥିବା କାତିରେ ବାଳ ଅଥବା ରୁମ ଥାଏ। ଅନ୍ୟମାନଙ୍କର ନଥାଏ।

ବଜ୍ରକାପ୍ତା ଏକୁଟିଆ ରହିବାକୁ ପସନ୍ଦ କରନ୍ତି। ମଳ-ମୂତ୍ର ମାଧ୍ୟମରେ ସେମାନେ ନିଜର ବସତି ସୀମା ନିର୍ଦ୍ଧାରଣ କରନ୍ତି। ଏତଦ ବ୍ୟତୀତ ସେମାନଙ୍କ ମାଂସ ଗ୍ରନ୍ଥିରୁ ନିର୍ଗତ ହେଉଥିବା ଏକପ୍ରକାର ଦୁର୍ଗନ୍ଧମୟ ତରଳ ପଦାର୍ଥ ଶତ୍ରୁର ମୁହଁରେ ନିର୍ଗତ କରାଇ ନିଜକୁ ରକ୍ଷା କରନ୍ତି। ସାଧାରଣତଃ ଶତ୍ରୁର ଶରୀରକୁ ନିଜ ଲାଞ୍ଜଦ୍ୱାରା କ୍ଷିପ୍ର ଗତିରେ ବାଡାଇ ନିଜକୁ ଆକ୍ରମଣରୁ ରକ୍ଷା କରନ୍ତି। କାତି ଗୁଡ଼ିକରେ ଔଷଧୀୟ ଗୁଣ ଥିବାରୁ ମଣିଷ ଏମାନଙ୍କୁ ବହୁ ସଂଖ୍ୟାରେ ଶିକାର କରେ। ଏହି କାରଣରୁ ଏମାନଙ୍କର ବଂଶ ଲୋପ ହେବାକୁ ବସିଲାଣି। ଏମାନଙ୍କର ହାରାହାରି ଆୟୁଷ ତେର ବର୍ଷ।

# ସିମ୍ପାଞ୍ଜି

## Chimpanzee

ସିମ୍ପାଞ୍ଜି ସ୍ତନ୍ୟପାୟୀ । ଏଗୁଡ଼ିକ ଦୁଇ ପ୍ରକାରର । ଆଫ୍ରିକା ମହାଦେଶରେ ବିଶେଷ ଭାବରେ ଦେଖାଯାନ୍ତି । ବହୁଳ ଭାବରେ ଦେଖାଯାଉଥିବା ସିମ୍ପାଞ୍ଜି କେନ୍ଦ୍ରୀୟ ଆଫ୍ରିକା ଏବଂ ପଶ୍ଚିମ ଆଫ୍ରିକାରେ ବସବାସ କରନ୍ତି । ଏଗୁଡିକ ଘଞ୍ଚ ଜଙ୍ଗଲରେ ଚଳପ୍ରଚଳ ପାଇଁ ପସନ୍ଦ କରନ୍ତି ।

''ବନ୍ୟୋ'' ଦ୍ଵିତୀୟ ପ୍ରକାର ସିମ୍ପାଞ୍ଜି । ଏମାନଙ୍କୁ 'ପିଗ୍‌ମି' ସିମ୍ପାଛି କୁହାଯାଏ । ନାମ ଅନୁସାରେ ଏଗୁଡିକ ଆକାରରେ ଛୋଟ ନୁହଁନ୍ତି । 'ଜାୟରୀ' ନଦୀ କୂଳରେ ଅବସ୍ଥିତ ବର୍ଷା ହେଉଥିବା ଜଙ୍ଗଲରେ ବହୁଳ ଭାବରେ ବାସ କରନ୍ତି । ଦୁଇ ପ୍ରକାର ସିମ୍ପାଛି ମଧ୍ୟରେ ଆକାରରେ ବଡ ଗୁଡ଼ିକର ରଙ୍ଗ ଈଷତ ବାଇଗଣି ବା ବାଦାମୀ । ଛୋଟ ଆକାର ସିମ୍ପାଞ୍ଜିର ରଙ୍ଗ କଳା । ସିମ୍ପାଞ୍ଜିମାନେ ସାଧାରଣତଃ ଭୂପୃଷ୍ଠରେ ବୁଲାବୁଲି କରିବାକୁ ପସନ୍ଦ କରନ୍ତି । ଦୁଇ ଗୋଡ଼ ସିଧା ଠିଆ ହେବାର ଦକ୍ଷତା ଏମାନଙ୍କର ଅଛି । ସାଧାରଣତଃ ଚାରିଗୋଡ ସାହାଯ୍ୟରେ ପାପୁଲି ନ ଲଗାଇ ଆଙ୍ଗୁଳି ଗଣ୍ଠି ବ୍ୟବହାର କରି ଯାତାୟତ କରନ୍ତି ।

ସିମ୍ପାଞ୍ଜି ନିରାମିଷାଶୀ ଏବଂ ପାଚିଲା ଫଳ ଖାଇବାରେ ବିଶେଷ ଆଗ୍ରହୀ । ଦରକାର ପଡିଲେ ମାଙ୍କଡ ପ୍ରଭୃତିକୁ ମାରି ଭୋଜନ କରନ୍ତି । ସେମାନେ କୀଟ, ଶଁବାଳୁଆ ଏବଂ ପିମ୍ପୁଡିକୁ ଆହାର କରନ୍ତି । ପିମ୍ପୁଡି ବସାରେ ବାଡିକୁ ଭର୍ତ୍ତି କରି ପିମ୍ପୁଡି ବାହାରକୁ ବାହାରିବା ପର୍ଯ୍ୟନ୍ତ ଅପେକ୍ଷା କରନ୍ତି । ସେମାନେ ଟାଣୁଆ ଫଳର ଖୋଳପା ଭାଙ୍ଗିବା ପାଇଁ ପଥର ବ୍ୟବହାର କରନ୍ତି । ଗରିଲାଙ୍କ ପରେ ସିମ୍ପାଞ୍ଜି ବୁଦ୍ଧିଆ ।

ସିମ୍ପାଞ୍ଜି ଦଳ ଦଳ ହୋଇ ରହନ୍ତି । ଗୋଟିଏ ଦଳରେ ପ୍ରାୟ ଏକଶହ କୋଡିଏ ସିମ୍ପାଛି ଦେଖିବାକୁ ମିଳେ । କେତେକ ମଧ୍ୟ ଏକୁଟିଆ ରହିବା ପାଇଁ ପସନ୍ଦ କରନ୍ତି । କିନ୍ତୁ, ଏମାନଙ୍କ ମଧ୍ୟରୁ ଅଧିକାଂଶ ଛୋଟ ଛୋଟ ଦଳରେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାତାୟତ କରନ୍ତି । ପ୍ରତି ଦଳରେ ବାରଟି ପୁରୁଷ ସିମ୍ପାଞ୍ଜି ଦେଖିବାକୁ ମିଳେ । ଏମାନେ ଦଳର ସୁରକ୍ଷା ଦାୟିତ୍ୱରେ ରହନ୍ତି ।

ଦଳ ଦଳ ମଧ୍ୟରେ କନ୍ଦଳ ଏବଂ ଗୋଟିଏ ଦଳ ଅନ୍ୟ ଦଳକୁ ବାଡି ପକେଇ ଉତ୍ୟକ୍ତ କରାଇବା ନିତି ଦିନିଆ କାମ । ଗୋଟିଏ ଦଳର ପୁରୁଷ ସିମ୍ପାଛି ସହିତ ଅନ୍ୟ ଦଳର ବୁଢା ପୁରୁଷ ସିମ୍ପାଞ୍ଜି ଲଢେଇ କରେ । ଦଳ ଛାଡ଼ି ଚାଲିଯିବା ପର୍ଯ୍ୟନ୍ତ ଏହି ଲଢେଇ ଚାଲେ ।







ସିମ୍ପାଜି Chimpanzee

# ଗରିଲା

## Gorilla

ସ୍ତନ୍ୟପାୟୀମାନଙ୍କ ମଧ୍ୟରେ ଗରିଲା ବୃହତାକାର। ବୟସ୍କ ମାଈ ଗରିଲା ପୁରୁଷ ଗରିଲାମାନଙ୍କଠାରୁ ଅଧିକ ଓଜନିଆ। ବୁଦ୍ଧିରେ ମଣିଷଙ୍କଠାରୁ କମ ବୁଦ୍ଧିଆ ହେଲେ ମଧ୍ୟ ଅନ୍ୟ ପ୍ରାଣୀମାନଙ୍କଠାରୁ ସିମ୍ପାଞ୍ଜି ଏବଂ ଗରିଲା ବୁଦ୍ଧିଆ।

ଗରିଲା ଦଳ ଦଳ ହୋଇ ରହିବାକୁ ଭଲ ପାଆନ୍ତି। ପ୍ରତି ଦଳରେ ପାଞ୍ଚରୁ ଦଶ ପର୍ଯ୍ୟନ୍ତ ଗରିଲା ଦେଖାଯା'ନ୍ତି। ପ୍ରତି ଦଳରେ ଗୋଟିଏ ବୁଢା ଗରିଲା, ଏକାଧିକ ମାଈ ଗରିଲା ଏବଂ ସେମାନଙ୍କ ଛୁଆ ଥା'ନ୍ତି।

ଗରିଲା ସାଧାରଣତଃ ସରଳ ଏବଂ ଶାନ୍ତ। ଦିନର ଅଧିକାଂଶ ସମୟ ଖାଇବାରେ ବ୍ୟସ୍ତ ରହନ୍ତି। କାରଣ ତାଙ୍କର ପ୍ରିୟ ଖାଦ୍ୟ ପତ୍ର। ନିଜର ଶରୀରକୁ ଚାହିଁ ବହୁ ପରିମାଣର ପତ୍ର ଦରକାର ହୋଇଥିବାରୁ ବାଧହୋଇ ଅଧିକାଂଶ ସମୟ ଖାଇବାରେ ଦିଅନ୍ତି। ଖାଇବା ପରେ ଖାଦ୍ୟ ହଜମ ପାଇଁ ବିଶ୍ରାମ କରନ୍ତି। ରାତିରେ ଭୂଇଁରେ ଅଥବା ଛୋଟ ଗଛରେ ନିଜର ବସା ତିଆରି କରନ୍ତି। ଅଧିକାଂଶ ସମୟ ଗଛ ଅପେକ୍ଷା ଭୂପୃଷ୍ଠରେ କଟାଇବାକୁ ପସନ୍ଦ କରନ୍ତି। ଅଧିକାଂଶ ସମୟରେ ଚାରିଗୋଡରେ ଚାଲନ୍ତି, ସମୟେ ସମୟେ ଇଚ୍ଛାହେଲେ ଦୁଇଗୋଡରେ ଚାଲନ୍ତି। ସିମ୍ପାଞ୍ଜିଙ୍କ ସଦୃଶ ଗରିଲା ତାଙ୍କର ପାଦ ଏବଂ ହାତର ଗଣ୍ଠି ଉପରେ ଚାଲନ୍ତି। ଶାବକ ଗରିଲା ଗଛରେ ରହିବାକୁ ଭଲପାଏ। ଗରିଲା ଗରିଲା ମଧ୍ୟରେ କୌଣସି ଅବୁଝାମଣା ହେଲେ ପରିସ୍ଥିତି ଭୟଙ୍କର ହୁଏ। ଜଙ୍ଗଲରେ ଗରିଲା ମଣିଷକୁ ଭୟ କରେ ନାହିଁ। ଏପରିକି ସେମାନଙ୍କ ପାଖକୁ ମଣିଷ ଗଲେ କୌଣସି କ୍ଷତି କରେ ନାହିଁ। ସେମାନଙ୍କ ପାଖରେ ମଣିଷ ଧୀର ସ୍ଥିର ନରହିଲେ ମଣିଷକୁ ଆକ୍ରମଣ କରନ୍ତି। ଗରିଲା ସାଧାରଣତଃ ଗୋଟିଏ ଜାତିର। ଏମାନଙ୍କର ତିନିଟି ଉପଜାତି ଅଛନ୍ତି। ମଣିଷ ନିଜର ବସତି ସ୍ଥାପନ ପାଇଁ ଜଙ୍ଗଲ ସଫା କରୁଥିବାରୁ ଗରିଲା ବଂଶ କମିକମି ଯାଉଛି। ପର୍ବତରେ ବସବାସ କରୁଥିବା ଗରିଲାଙ୍କର ସଂଖ୍ୟା ଦିନକୁ ଦିନ ହ୍ରାସ ହେଉଛି। ଏମାନେ ସାଧାରଣତଃ ଦେଖିବାକୁ କଳା। ପଶ୍ଚିମାଞ୍ଚଳ ନିମ୍ନଭାଗରେ ବାସ କରୁଥିବା ଗରିଲା ଧୂସର ରଙ୍ଗର। ଏହି ଜାତିର ଅଣ୍ଡିରା ଗରିଲା କେନ୍ଦ୍ରୀୟ ପଶ୍ଚିମ ଏସିଆ ଏବଂ କଙ୍ଗୋଠାରେ ଦେଖାଯା'ନ୍ତି।



# ଗଧିଆ

## Wolf

ସ୍ତନ୍ୟପାୟୀ ପ୍ରାଣୀଙ୍କ ମଧ୍ୟରେ ଗଧିଆ ଅନ୍ୟତମ। ଆଫ୍ରିକାରେ ଦୁଇ ପ୍ରକାରର ଗଧିଆ ଦେଖାଯାନ୍ତି। ଗୋଟିଏ ପ୍ରକାର ପାଉଁଶିଆ ରଙ୍ଗର ଏବଂ ଅନ୍ୟଟି ନାଲି ରଙ୍ଗର। ପାଉଁଶିଆ ବର୍ଣ୍ଣର ଗଧିଆ । ଉତ୍ତର ଆମେରିକାର ଉତ୍ତର ଭାଗର ଅର୍ଦ୍ଧାଂଶ, ଉତ୍ତର ଇଉରୋପ ଏବଂ ଏସିଆର ପ୍ରାୟତଃ ସର୍ବତ୍ର ବସବାସ କରୁଥିବା ଦେଖାଯାଏ। ବ୍ରିଟେନ୍‌ରେ ଏଗୁଡ଼ିକ ଲୁପ୍ତ ପ୍ରାୟ ଏବଂ ପଶ୍ଚିମ ଇଉରୋପର କେତୋଟି ନିଛାଟିଆ ଜାଗାରେ ଦେଖାଯା'ନ୍ତି। ମଣିଷମାନଙ୍କ ବସତି ସ୍ଥାପନ ପାଇଁ ଆପ୍ରାଣ ଉଦ୍ୟମ ପାଉଁଶିଆ ଜାତୀୟ ଗଧିଆଙ୍କର ବଂଶ ଲୋପ ହେବାର ପ୍ରଧାନ କାରଣ। ଗଧିଆମାନଙ୍କ ପ୍ରତି ମଣିଷଙ୍କର ନିଷ୍ଠୁରତା ମଧ୍ୟ ସେମାନଙ୍କର ବଂଶ ଲୋପ ହେବାର ଅନ୍ୟ ଏକ ପ୍ରଧାନ କାରଣ। ପୋଷା କୁକୁର ଗଧିଆଙ୍କର ବଂଶଧର। ନାଲି ରଙ୍ଗର ଗଧିଆ ଉତ୍ତର ଆମେରିକାର ଦକ୍ଷିଣ-ପୂର୍ବ ଭାଗରେ ବହୁଳ ଭାବରେ ବାସ କରନ୍ତି। ଏମାନଙ୍କର ସଂଖ୍ୟା ଦିନକୁ ଦିନ କମିବାରେ ଲାଗିଛି।

ଗଧିଆ ସାଧାରଣତଃ ସାମାଜିକ ପ୍ରାଣୀ ଏବଂ ସାତରୁ କୋଡ଼ିଏ ପର୍ଯ୍ୟନ୍ତ ଏକାଠି ରହନ୍ତି। ଗଧିଆ ଗୁଡ଼ିକର ସହବାସ କ୍ଷମତା ଦୀର୍ଘସ୍ଥାୟୀ। ସୁତରାଂ ଏମାନଙ୍କ ଦଳରେ ବହୁ ଯୋଡ଼ି ଏବଂ ଶାବକ ଦେଖାଯା'ନ୍ତି । ଏମାନେ ସାଧାରଣତଃ ଏକ ଶହ ବର୍ଗ କିଲୋମିଟରରୁ ଏକ ହଜାର ବର୍ଗ କିଲୋମିଟର ଅଞ୍ଚଳ ପରିସୀମା ମଧ୍ୟରେ ବାସ କରନ୍ତି। ଏହି ପରିସୀମା ସେମାନଙ୍କ ଗଚ୍ଛିତ ଖାଦ୍ୟର ପରିମାଣ ଉପରେ ନିର୍ଭର କରେ। ସେମାନେ ନିଜର ବସତିର ସୀମା ପରିସ୍ରା ଦ୍ୱାରା ଏବଂ ବାରମ୍ବାର ଭୁକିବା ଦ୍ୱାରା ନିର୍ଦ୍ଧାରଣ କରିଥା'ନ୍ତି। ଗୋଟିଏ ଦଳ ଅନ୍ୟ ଗୋଟିଏ ଦଳଠାରୁ ନିଜକୁ ଦୂରେଇ ରଖେ। କୌଣସି କାରଣରୁ ଗୋଟିଏ ଦଳ ଅନ୍ୟ ଦଳର ନିକଟବର୍ତ୍ତୀ ହେଲେ ଦୁଇ ଦଳ ମଧ୍ୟରେ କଳହ ହୁଏ ଏବଂ ମୃତ୍ୟୁ ପର୍ଯ୍ୟନ୍ତ ଲଢାଇ ଚାଲୁରହେ। ସବଳ ଅଣ୍ଡିରା ଗଧିଆ ଦଳର ମୁଖିଆ। ମାଈ ଗଧିଆ ମଧ୍ୟରୁ ଶ୍ରେଷ୍ଠ ମାଈ ଗଧିଆ ମୁଖିଆ ଗଧିଆର ଜୀବନ ସଙ୍ଗୀନୀ ହୁଏ। ଏହି ଯୋଡ଼ି ଅନ୍ୟ ଯୋଡ଼ିଠାରୁ ଅଧିକ ଛୁଆ ଜନ୍ମ କରେ।

ମୁଖିଆ ଗାଉଁ ଗାଉଁ ହୋଇ ଏବଂ ଦାନ୍ତ ରଗଡ଼ି ତା'ର ପ୍ରାଧାନ୍ୟ ପ୍ରମାଣିତ କରେ। ଅନ୍ୟମାନେ ନିଜ ନିଜର କାନକୁ ପଛେଇ ଏବଂ ଲାଞ୍ଜକୁ ଗୋଡ଼ ଭିତରେ ଜାକି ମୁଖିଆ ...ଳେ ନ୍ୟୁନତା ପ୍ରକାଶ କରନ୍ତି। ନ୍ୟୁନତା ପ୍ରକାଶ କରିଥିବା ଗଧିଆ । ଅନ୍ୟମାନଙ୍କର ...ଖିଆ ହୋଇପାରେ। ଶୀତ ଋତୁର ଶେଷ ଭାଗରେ ମାଈ ଗଧିଆ ଛୁଆ ଜନ୍ମ

କରେ । ମାଈ ଗଧିଆ ଏକ ସମୟରେ ଚାରିରୁ ସାତୋଟି ଛୁଆ ଜନ୍ମ କରେ । ସେଗୁଡ଼ିକ ନିଃସହାୟ ଏବଂ ଆଖି ଖୋଲିନଥାଏ । ପ୍ରାୟ ଚାରି ସପ୍ତାହ ପରେ ଗଧିଆ ଛୁଆ ତାଙ୍କର ବସାରୁ ବାହାରକୁ ଆସନ୍ତି । ବାପା-ମା ଏବଂ ଅନ୍ୟ ନିର୍ବ୍ଲୁଆ ଗଧିଆ ଛୁଆ ଗୁଡ଼ିକର ଦେଖା ଚାହାଁ କରନ୍ତି ।



# ଓଧ

## Otters

ଓଧ ସ୍ତନ୍ୟପାୟୀ । ଏଗୁଡିକ ସାଧାରଣତଃ ବାର ପ୍ରକାର । ଉତ୍ତର ପ୍ରଶାନ୍ତ ମହାସାଗରରେ "ସମୁଦ୍ର ଓଧ" ବସବାସ କରନ୍ତି ଏବଂ ଅନ୍ୟଗୁଡ଼ିକ ଅଷ୍ଟ୍ରେଲିଆ ଏବଂ ଆର୍ଣ୍ଣଟିକା ବ୍ୟତୀତ ଅନ୍ୟ ସବୁ ସ୍ଥାନରେ ବାସ କରୁଥିବା ଦେଖାଯାଏ । ସମୁଦ୍ର ବ୍ୟତୀତ, ନଈ, ହ୍ରଦ ଏବଂ ସନ୍ତସନ୍ତିଆ ସ୍ଥାନରେ ରହିବାକୁ ଏମାନେ ଆଗ୍ରହ ପ୍ରକାଶ କରନ୍ତି । ଓଧ ସାଧାରଣତଃ ଖାଦ୍ୟ ପାଇବା ଆଶାରେ ପାଣି ପାଖରେ ରହିବାକୁ ପସନ୍ଦ କରନ୍ତି । ଓଧର ଶରୀରରେ ଘଞ୍ଚ ପଶମ ତୁଲ୍ୟ ଲୋମ ଦେଖିବାକୁ ମିଳେ । ଲମ୍ବା ବାଳ ମଧ୍ୟ ଥାଏ । ଶରୀରରେ ପାଣି ଲାଗିଲେ ସାଙ୍ଗେ ସାଙ୍ଗେ ଶୁଖିଯାଏ । ଏଗୁଡିକର ଶରୀର କୋମଳ । ଲାଞ୍ଜଟି ବହଳିଆ ଏବଂ ମାଂସାଳ । ଲାଞ୍ଜର ନିମ୍ନଭାଗ ସାଧାରଣତଃ ଚେପଟା । ଏହା ଓଧର ସନ୍ତରଣରେ ସାହାଯ୍ୟ କରେ । ଓଧର ପଞ୍ଜା ଛନ୍ଦାଛନ୍ଦି ଭାବରେ ଥାଏ । ଓଧ ଶକ୍ତିଶାଳୀ ଏବଂ କାର୍ଯ୍ୟକ୍ଷମ । ଓଧ ସବୁଦିନ ଏକ କିଲୋଗ୍ରାମ ଓଜନର ଖାଦ୍ୟ ବିଭିନ୍ନ ସମୟରେ ଖାଇପାରେ । ଏହାର ଦାନ୍ତଗୁଡ଼ିକ ଶକ୍ତ । ଏହି ଶକ୍ତ ଦାନ୍ତ ସାହାଯ୍ୟରେ ଶିକାରର ହାଡଗୁଡ଼ିକ ଖଣ୍ଡ ଖଣ୍ଡ କରିଦିଏ । ଏମାନଙ୍କର ହଜମ ଶକ୍ତି ପ୍ରବଳ । ଖୁବ୍ କମ୍ ସମୟରେ ଖାଦ୍ୟ ହଜମ ହୁଏ ।

ଅଧିକାଂଶ ଓଧ (ଇଉରୋପ ଏବଂ ଉତ୍ତର ଆମେରିକାରେ) ଏକୁଟିଆ ରହିବାକୁ ପସନ୍ଦ କରନ୍ତି । ସହବାସ ସମୟରେ ଯୋଡି ହୋଇ ରହନ୍ତି । କିଛି ମାସ ଏକାଠି ରହିବା ପରେ ପରସ୍ପର ଠାରୁ ଅଲଗା ହୁଅନ୍ତି । "କେପ" ଜାତୀୟ ଓଧ ସବୁ ସମୟରେ ଯୋଡି (ହଳି) ହୋଇ ରହନ୍ତି ।

ଓଧ ବିଭିନ୍ନ ରକମର ରଡି କରନ୍ତି । ସମୟେ ସମୟେ ଅନ୍ୟ ଓଧ ସହିତ ସମ୍ପର୍କ ରକ୍ଷା କରିବା ପାଇଁ ଚେଁ ଚାଁ ଶବ୍ଦ କରେ । ଓଧ ରାଗିଗଲେ ଗଁ ଗଁ ହୁଏ । ଅନ୍ୟ ଉପାୟରେ ମଧ୍ୟ ଅନ୍ୟ ଓଧ ସହିତ ସମ୍ପର୍କ ରଖେ । ଏହି ଖୋଜିବା ଉପାୟଟି ଅତି ସହଜ । ଝାଡା ଫେରନ୍ତି ଏବଂ ମୂତନ୍ତି । ଝାଡା ଏବଂ ମୂତର ବାସନାରେ ଅନ୍ୟ ଓଧ ତା'ର ସାଥି ଓଧ ଥିବା ସ୍ଥାନ ଜାଣିପାରେ । ଏହି ବାସନା ମାଧ୍ୟମରେ ସେମାନେ ସେମାନଙ୍କର ଚଳଣିର ସୀମା ମଧ୍ୟ ନିର୍ଦ୍ଧାରଣ କରନ୍ତି ।



# ଚିତାବାଘ

## Cheetah

ସ୍ତନ୍ୟପାୟୀଙ୍କ ମଧ୍ୟରେ ଚିତାବାଘ ଅନ୍ୟତମ। ଚିତାବାଘର ମୁଣ୍ଡ ଛୋଟ ଏବଂ ପତଳା ଏହାର ଅଙ୍ଗ ପ୍ରତ୍ୟଙ୍ଗ ସାଧାରଣତଃ ଶିଥିଳ। ଏହାର ଶରୀରରେ ବଡ ବଡ ଦାଗ ଦେଖାଯାଏ। ଆଫ୍ରିକା ଏବଂ ମଧ୍ୟପ୍ରାଚ୍ୟରେ ଏଗୁଡ଼ିକ ସାଧାରଣତଃ ଦେଖାଯା'ନ୍ତି। ପ୍ରାୟ ପଚାଶହଜାର ଚିତା ଆଫ୍ରିକାରେ ଥିବା ପଶୁ ଗଣନାରୁ ଜଣାଯାଏ।

ଚିତାର ଗତି ଅତି କ୍ଷିପ୍ର। ପୃଥିବୀର ସମସ୍ତ ପ୍ରାଣୀମାନଙ୍କ ମଧ୍ୟରେ ଏଗୁଡ଼ିକ ଦ୍ରୁତଗାମୀ। ଚିତା ଘଣ୍ଟାକୁ ଛୟାନବେ କିଲୋମିଟର ବେଗରେ ଧାଇଁପାରେ।

ଆଫ୍ରିକାରେ ପ୍ରତିବର୍ଷ ମାଈ ଚିତା ଗୋଟିଏ ସ୍ଥାନରୁ ଅନ୍ୟସ୍ଥାନକୁ ଯାଏ। ନୂଆ ସ୍ଥାନ ପୁରୁଣା ବସତିଠାରୁ ଆଠଶହ ବର୍ଗ କିଲୋମିଟର ମଧ୍ୟ ହୋଇପାରେ। ମାଈ ଚିତା କୌଣସି ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ବାସ କରିବାକୁ ପସନ୍ଦ କରେ ନାହିଁ। ସୁତରାଂ ଗୋଟିଏ ସ୍ଥାନରେ ଦୁଇଟି ଅଥବା ଦୁଇରୁ ଅଧିକା ମାଈ ଚିତା ଦେଖିବାକୁ ମିଳେ।

ଅଣ୍ଡିରା ଚିତା ଭୀଷଣ ଭୟଙ୍କର। ଆବଶ୍ୟକ ପଡିଲେ ଅଣ୍ଡିରା ଚିତା ଅନ୍ୟ ଗୋଟିଏ ଅଣ୍ଡିରା ଚିତା ସହିତ ନିଜ ବସତିର ସୁରକ୍ଷା ପାଇଁ ମୃତ୍ୟୁ ପର୍ଯ୍ୟନ୍ତ ଲଢେଇ କରେ। ନିଜର ବସତି ଅଞ୍ଚଳର ସୀମାକୁ ଗଛ ଗଣ୍ଡିରେ ପରିସ୍ରା କରି ନିର୍ଦ୍ଧାରଣ କରନ୍ତି। ଅଣ୍ଡିରା ଚିତା ଏକାଠି ମଧ୍ଯ ଶିକାର କରିବାକୁ ପସନ୍ଦ କରନ୍ତି।

ମାଈ ଚିତା ବର୍ଷର ସବୁ ସମୟରେ ଗର୍ଭଧାରଣ କରିପାରେ। ଅଣ୍ଡିରା ଚିତା ଶାବକ ଚିତାର ଲାଳନ ପାଳନ ପ୍ରତି ଦୃଷ୍ଟି ଦିଏନାହିଁ। ଜନ୍ମ ସମୟରେ ଶାବକ ଚିତା ଓଜନ ସାଧାରଣତଃ ଦୁଇଶହ ପଚାଶ ଗ୍ରାମରୁ ତିନିଶହ ଗ୍ରାମ ହୋଇଥାଏ। ଶାବକ ଚିତା ଜନ୍ମ ହେବାର ଦୁଇଦିନଠାରୁ ଏଗାର ଦିନ ମଧ୍ୟରେ ଆଖିଖୋଲେ। କିଛି ସପ୍ତାହ ପରେ ଶାବକ ସେମାନଙ୍କର ବସା ଛାଡି ମା'ଚିତା ସାଥିରେ ବାହାରକୁ ବୁଲିବାକୁ ଯାଆନ୍ତି। ତିନିମାସ ପର୍ଯ୍ୟନ୍ତ ମା'ଚିତା ସେମାନଙ୍କର ଲାଳନ ପାଳନ ଦାୟିତ୍ୱରେ ରହି ନିଜର ଶିକାରକୁ ସେମାନଙ୍କ ଖାଇବାକୁ ଦିଏ। ସତର ମାସରୁ ତେଇଶ ମାସ ବୟସ ହୋଇଗଲେ, ମା ଚିତା ତା'ର ପିଲାମାନଙ୍କୁ ଜଣକ ପରେ ଜଣକୁ ନିଜଠାରୁ ଅଲଗା କରିଦିଏ। ଅଣ୍ଡିରା ଭୁଆ ଦଳରେ ରହନ୍ତି।

ଚିତାଗୁଡ଼ିକ ସିଂହ, ଗଧିଆ, ବାଘ ପ୍ରଭୃତି ବାସ କରୁଥିବା ସ୍ଥାନରେ ଚଳପ୍ରଚଳ ହୁଅନ୍ତି।

ମଧ୍ୟାହ୍ନ ସମୟରେ ବଡ ବଡ ଜୀବଜନ୍ତୁ ବିଶ୍ରାମ କରନ୍ତି । ସୁତରାଂ, ଚିତା ଏହି ସମୟରେ ଶିକାର କରିବାକୁ ପସନ୍ଦ କରେ । ଶିକାର କରିବା ସମୟରେ ଶାଗୁଣା ଦ୍ୱାରା ହଇରାଣ ହୁଏ । ଶିକାରକୁ ଧରି ସେ' ଏକ ନିଛାଟିଆ ସ୍ଥାନକୁ ନେଇ ଯାଏ ଏବଂ ସେହି ସ୍ଥାନରେ ନିରୋଳା ଶିକାରକୁ ଖାଏ ।



# ଗୁଣ୍ଡୁଚି ମୂଷା

## Squirrels

ଗୁଣ୍ଡୁଚିମୂଷା ସ୍ତନ୍ୟପାୟୀ ଜୀବ। ଏଗୁଡ଼ିକ ଗଛ ଉପରେ ରହିବା ଅପେକ୍ଷା ମାଟିତଳେ ରହିବାକୁ ପସନ୍ଦ କରନ୍ତି। ଗୁଣ୍ଡୁଚି ମୂଷା ବିଭିନ୍ନ ରଙ୍ଗ ଏବଂ ଜାତିର। ସେମାନଙ୍କ ମଧ୍ୟରେ ପାଉଁଶିଆ ଜାତୀୟ, ଇଉରୋପରେ ଦେଖାଯାଉଥିବା ନାଲି ଜାତୀୟ, ଗଛରେ ବସାବାନ୍ଧିଥିବା ଏବଂ ଭୂମିରେ ରହୁଥିବା ଗୁଣ୍ଡୁଚିମୂଷା ଅନ୍ୟତମ। ଏମାନଙ୍କର ଚଳଣି ଏବଂ ବସତି ମଧ୍ୟ ଭିନ୍ନ ଭିନ୍ନ। ସେମାନଙ୍କ ମଧ୍ୟରୁ କେତେକ ପାହାଡ ପର୍ବତରେ ବାସ କରୁଥିବା ସମୟରେ କେତେକ ଶୁଖିଲା ଘାସୁଆ ସ୍ଥାନ ଏବଂ ଅନ୍ୟ କେତେକ କ୍ରାନ୍ତି ବଳୟର ବର୍ଷା ଅଞ୍ଚଳରେ ଦେଖାଯା'ନ୍ତି। ଗୁଣ୍ଡୁଚି ମୂଷା ଅଷ୍ଟ୍ରେଲିୟା ଏବଂ ଆର୍ଣ୍ଟାଟିକାରେ ଦୃଷ୍ଟିଗୋଚର ହୁଅନ୍ତି ନାହିଁ।

ଗୁଣ୍ଡୁଚିମୂଷା ଦେଖିବାକୁ ଲମ୍ବା ଏବଂ ଶରୀର ଗୋଲ। ଏମାନଙ୍କର ଆଖି ଦେଖିବାକୁ ବଡ, ଗୋଡ ଏବଂ ପଞ୍ଜା ଶକ୍ତ। ଲାଞ୍ଜଟି ଗୋଛା ଲୋମରେ ଆବୃତ। ଦାନ୍ତଗୁଡ଼ିକ ଲମ୍ବା ଏବଂ ମୁନିଆ। ଏହି ଦାନ୍ତ ସକାଶେ ଗୁଣ୍ଡୁଚିମୂଷାକୁ ମୂଷା, ଠେକୁଆ ଜାତି ଅନ୍ତର୍ଭୁକ୍ତ କରାଯାଏ। ଦାନ୍ତ ସାହାଯ୍ୟରେ ମଞ୍ଜିକୁ ଫଳର ଖୋଳ ମଧ୍ୟରୁ ବାହାର କରିବାରେ ସମର୍ଥ ହୁଏ; ଦାନ୍ତ ଫଳକୁ ଚୋବାଇବାରେ ସାହାଯ୍ୟ କରେ। ଫୁଲ, ଫଳ, ଚେର ଛେଲିକୁ ସହଜରେ ଦାନ୍ତଦ୍ୱାରା କାମୁଡି ଅଲଗା କରିଦିଅନ୍ତି। ଏଗୁଡ଼ିକ ଗଛର ଫଳ ଏବଂ ଛତୁ ଇତ୍ୟାଦି ଖାଇ ବଞ୍ଚନ୍ତି। କେତେକ ପାନ ଏବଂ କୀଟ ପତଙ୍ଗକୁ ନିଜର ଖାଦ୍ୟ ରୂପେ ବ୍ୟବହାର କରନ୍ତି। ଅନ୍ୟ କେତେକ ଗୁଣ୍ଡୁଚିମୂଷା, ଝିଟିପିଟି, ଗୋଧି, ଛୋଟ ପକ୍ଷୀ, ଅଣ୍ଡା, କୀଟ ଇତ୍ୟାଦି ଖାଇ ଜୀବନ ଧାରଣ କରନ୍ତି। କେତେକ ଉଈ ଏବଂ ଶଁବାଳୁଆ ଖାଇବାରେ ମଧ୍ୟ ଧୂରନ୍ଧର।

ଗୁଣ୍ଡୁଚି ମୂଷା ସିଧା ଗଛର ତଳକୁ ଏବଂ ଉପରକୁ ନିଜ ପଞ୍ଜା ସାହାଯ୍ୟରେ ଧାଇଁ ପାରନ୍ତି ଏବଂ ଝୁଲି ରହନ୍ତି। ତାଙ୍କର ଦୃଷ୍ଟିଶକ୍ତି ତୀକ୍ଷ୍ଣ।

ଉଡନ୍ତା ଗୁଣ୍ଡୁଚିମୂଷା ଡେଇଁବା ସମୟରେ ଚାରି ଗୋଡକୁ ସିଧା କରିଦିଏ। ଏହାଦ୍ୱାରା ତାର ଚମ ସିଧା ହୁଏ ଏବଂ ଆକାଶ ଛତା (ପାରାଚୁଟ)ର ଆକୃତି ପରି ଦେଖାଯାଏ। ଲାଞ୍ଜ ଆହୁଲାର କାମ କରେ। ଏହି ଜାତୀୟ ଗୁଣ୍ଡୁଚିମୂଷା ରାତ୍ରିଚର।

ଗୁଣ୍ଡୁଚିମୂଷା ତାର ଲାଞ୍ଜ ସାହାଯ୍ୟରେ ବିଭିନ୍ନ କାମ କରେ। ଉଡନ୍ତା ଏବଂ ଭୂପୃଷ୍ଠରେ ଚଳପ୍ରଚଳ କରୁଥିବା ମୂଷାର ଲାଞ୍ଜ ଗଛରେ ଓହଳିବା ସମୟରେ ସେମାନଙ୍କ ଭାରସାମ୍ୟ

ସମାନ ରଖିବା ପାଇଁ କାତ (ଆହୁଲା) ପରି କାମ କରେ। ଲାଞ୍ଜ ଢୋରରେ ହଲାଇ ତା' ନିଜ କ୍ରୋଧ ପ୍ରକାଶ କରିଥାଏ। ଲାଞ୍ଜ ବାରମ୍ବାର ଧୀରେ ଧୀରେ ହଲାଇ ତା'ର ସଙ୍ଗିନୀକୁ ନିଜ ସହିତ ମିଶିବା ପାଇଁ ଇସାରା ଦିଏ। ଗ୍ରୀଷ୍ମ ସ୍ଥାନରେ ରହୁଥିବା ଗୁଣ୍ଡୁଚିମୂଷା ଖରା କଷ୍ଟରୁ ନିଜକୁ ରକ୍ଷା କରିବା ପାଇଁ ନିଜ ଶରୀର ପଛ ଅଂଶରେ ଠିଆ ହୁଏ। ଶୀତ ଦିନରେ ନିଜ ଲାଞ୍ଜକୁ ଶରୀରର ଚାରିପଟେ ଗୁଡାଇ ଶୁଏ। ଏହାଦ୍ୱାରା ସେ ଉଷୁମ ଅନୁଭବ କରେ। ପାଉଁଶିଆ, ନାଲି ଏବଂ ଗଳୁଆ ଗୁଣ୍ଡୁଚିମୂଷା ଖରାପ ପାଗରେ ବହୁଦିନ ଧରି ନିଜ ବସାରେ ଶୋଇରହେ। ପାଗ ବଦଳିଗଲେ ଖାଦ୍ୟ ଅନ୍ୱେଷଣ ପାଇଁ ବସା ବାହାରକୁ ଚାଲିଆସେ। ଦୀର୍ଘ ଛ' ମାସ ଧରି ମଧ ନିଜ ବସା ଭିତରେ ରହିବାର କ୍ଷମତା କେତେକ ଗୁଣ୍ଡୁଚିମୂଷାଙ୍କର ଅଛି। ଦୀର୍ଘଦିନ ପ୍ରତିକୂଳ ପାଗ ସକାଶେ ବସାରେ ରହିବା ପାଇଁ ପୂର୍ବରୁ ସେ' ନିଜର ଖାଦ୍ୟ ସଂଗ୍ରହ କରି ରଖିଥାଏ। ସୁତରାଂ ବଞ୍ଚିରହିବାରେ ଅସୁବିଧା ହୁଏ ନାହିଁ।

ଏକ ବର୍ଷ ବୟସ ହୋଇଗଲେ ଗୁଣ୍ଡୁଚିମୂଷାଙ୍କର ଗର୍ଭଧାରଣ ଶକ୍ତି ସୃଷ୍ଟି ହୁଏ। ଶାବକ ଗୁଡ଼ିକର ଜନ୍ମ ସମୟରେ ଦେଖିବାର କ୍ଷମତା ନଥାଏ। ଏମାନେ ବାଧହୋଇ ଅନ୍ୟର ସାହାଯ୍ୟ ଉପରେ ନିର୍ଭର କରନ୍ତି। ଦୁଇମାସ ହୋଇଗଲେ ବସାରୁ ବାହାରି ଆସି ନିଜର ଖାଦ୍ୟ ସଂଗ୍ରହ କରନ୍ତି। ଦୁଇ ପ୍ରକାରର ଗୁଣ୍ଡୁଚିମୂଷାଙ୍କ ବ୍ୟତୀତ ଅନ୍ୟମାନେ ସାଧାରଣତଃ ଅନିଷ୍ଟକାରୀ। ଏମାନେ ଫସଲ ନଷ୍ଟ କରନ୍ତି। ପାଉଁଶିଆ ବର୍ଣ୍ଣର ଗୁଣ୍ଡୁଚିମୂଷା ଛୋଟ ଗଛର ବକ୍କଳକୁ ଦାନ୍ତରେ କାମୁଡି ମିଠାଳିଆ ରସ ଖାଆନ୍ତି। ଏହାଦ୍ୱାରା ଗଛଗୁଡ଼ିକ ନଷ୍ଟ ହୋଇଯାଏ। ବିଭିନ୍ନ କାରଣରୁ ଏମାନଙ୍କର ବଂଶ ଧୀରେ ଧୀରେ ଲୋପ ପାଇବାରେ ଲାଗିଛି।





# ମେରୁ ଅଞ୍ଚଳର ଭାଲୁ

## Polar Bear

ମେରୁ ଅଞ୍ଚଳରେ ବାସ କରୁଥିବା ଭାଲୁ ସ୍ତନ୍ୟପାୟୀ ଏବଂ ମାଂସାଶୀ। ଚତୁଷ୍ପଦୀଙ୍କ ମଧ୍ୟରେ ଏମାନେ ବୃହଦାକାର। ସେମାନେ ଶୀତ ପ୍ରବାହ ଅଞ୍ଚଳରେ ବାସ କରନ୍ତି। ଅତ୍ୟଧିକ ଶୀତରେ ବସବାସ କରିବା ଏମାନଙ୍କର ବିଶେଷତ୍ୱ। ନାକ, ପାଦର ତଳ ଅଂଶକୁ ଛାଡି ଦେଲେ ଏମାନଙ୍କ ଶରୀର ଲୋମାବୃତ। ଏମାନଙ୍କର କାନ ଏବଂ ଲାଞ୍ଜ ଅତି ଛୋଟ। ଛୋଟ କାନ ଏବଂ ଲାଞ୍ଜ ସକାଶେ ଶରୀରକୁ ଉଷୁମ ରଖିବାରେ କୌଣସି ଅସୁବିଧା ହୁଏ ନାହିଁ।

ବରଫ ପାଣିରେ ଘଣ୍ଟା ଘଣ୍ଟା ଧରି ଏଗୁଡ଼ିକ ପହଁରି ପାରନ୍ତି। ଗୋଡ ଗୁଡ଼ିକ ଅଳ୍ପ ଜାଲଦ୍ୱାରା ଆଚ୍ଛାଦିତ। ପ୍ରତି ଗୋଡରେ ପାଞ୍ଚୋଟି ଲମ୍ବା ଏବଂ ବଙ୍କା ପଞ୍ଝା ଅଛି। ପଞ୍ଝା ସାହାଯ୍ୟରେ ବରଫ ଉପରେ ଚାଲିବା ସମୟରେ ଗୋଡ ଖସିଯାଏ ନାହିଁ। ଶିକାରକୁ ଧରିବାରେ ମଧ୍ୟ ଅସୁବିଧା ହୁଏ ନାହିଁ।

ଏଗୁଡ଼ିକ ସାଧାରଣତଃ ''ରିଙ୍ଗଡ୍ ସିଲ'' ଶିକାର କରନ୍ତି। ଆବଶ୍ୟକ ପଡ଼ିଲେ ସିଲ୍ ବରଫ ଗାତକୁ ଆସିବା ପର୍ଯ୍ୟନ୍ତ ଏହି ଭାଲୁ ଅପେକ୍ଷା କରିଥାନ୍ତି। ଏପ୍ରିଲ୍ ଏବଂ ମେ' ମାସରେ ''ରିଙ୍ଗଡ ସିଲ୍'' ଏବଂ ତା'ର ଛୁଆ ଗୁଡ଼ିକୁ ଶିକାର କରନ୍ତି। ସମୟେ ସମୟେ ତିମି ଶିକାର କରନ୍ତି। ଏଗୁଡ଼ିକ ନିଃସଙ୍ଗ ଜୀବନ ଅତିବାହିତ କରିବାକୁ ପସନ୍ଦ କରନ୍ତି। ପାଞ୍ଚ ବର୍ଷ ବୟସ ହେଲେ ମେରୁ ଭାଲୁ ଗର୍ଭଧାରଣ କରିବାର କ୍ଷମତା ପାଏ। ଅଣ୍ଡିରା ଭାଲୁ ଏବଂ ମାଈଭାଲୁ ସାଧାରଣତଃ ଏପ୍ରିଲ୍ ମାସରୁ ଜୁନ୍ ମାସ ମଧ୍ୟରେ ସମ୍ପର୍କ ସ୍ଥାପନ କରନ୍ତି। ଗର୍ଭବତୀ ମେରୁ ଭାଲୁ ନଭେମ୍ବର-ଡିସେମ୍ବର ମାସରେ ବରଫରେ ଗାତ ଖୋଳି ମାର୍ଚ୍ଚ ମାସ ପର୍ଯ୍ୟନ୍ତ ରହେ। ଏକାଥରକେ ତିନୋଟି ଛୁଆ ଜନ୍ମକରେ। ଜନ୍ମ ସମୟରେ ଛୁଆଗୁଡ଼ିକର ଓଜନ ଛ'ଶହରୁ ସାତଶହ ଗ୍ରାମ୍ ହୋଇଥାଏ।

ମେରୁ ଭାଲୁ କ୍ଷୀରରେ ଏକ ତୃତୀୟାଂଶ ଚର୍ବିଥାଏ। ଏହି ଚର୍ବି ଶାବକମାନଙ୍କୁ ବରଫ ଗାତରେ ରହିବା ସମୟରେ ଉଷୁମ ରଖିବାରେ ସାହାଯ୍ୟ କରେ। ଜନ୍ମର ତିନି ମାସ ପରେ ଛୁଆଗୁଡ଼ିକ ସେମାନଙ୍କର ମା' ସହିତ ବରଫ ଗାତରୁ ବାହାରକୁ ଆସନ୍ତି। ସେହି ସମୟରେ ସେମାନଙ୍କର ଓଜନ ତିନି କିଲୋରୁ ବାର କିଲୋ ମଧ୍ୟରେ ହୋଇଥାଏ।







ମେରୁ ଅଞ୍ଚଳର ଭାଲୁ Polar Bear

# ଗଣ୍ଡା

## Rhinoceroses

ଗଣ୍ଡା ସ୍ତନ୍ୟପାୟୀ ପ୍ରାଣୀଙ୍କ ମଧ୍ୟରେ ଆକାରରେ ବିଶାଳ। ଶ୍ରେଣୀ ଭେଦରେ ଏଗୁଡ଼ିକ ପାଞ୍ଚ ପ୍ରକାର। କଳା ଏବଂ ଧଳା ରଙ୍ଗର ଗଣ୍ଡା ଆଫ୍ରିକା ମହାଦେଶରେ ବାସ କରନ୍ତି। ଏହି ଦୁଇ ଜାତି ଗଣ୍ଡାଙ୍କର ଦୁଇଟି ଶିଙ୍ଘ। କଳା ରଙ୍ଗ ଗଣ୍ଡା କଅଁଳିଆ ପତ୍ରଡାଳ, ଘାସ ଖାଇ ବଞ୍ଚେ ଏବଂ ଖୁସି ମିଜାସି। ଏହାର ଉପର ଓଠଟି ଲମ୍ୱା। ଏହା ପାଟିକୁ ଖାଦ୍ୟ ପୂରାଇବାରେ ସାହାଯ୍ୟ କରେ। ଧଳା ରଙ୍ଗର ଗଣ୍ଡାର ମୁହଁ ଲମ୍ୱା ଓ ଗୋଳିଆ।

ଅନ୍ୟ ତିନି ଶ୍ରେଣୀର ଗଣ୍ଡା ଏସିଆ ମହାଦେଶରେ ବାସ କରନ୍ତି। ଭାରତୀୟ ଗଣ୍ଡାର ଶରୀର ସାଧାରଣତଃ ଯୁଦ୍ଧରେ ବ୍ୟବହୃତ ଅସ୍ତ୍ର ଶସ୍ତ୍ର ରଙ୍ଗ ପରି ଦେଖାଯାଏ। ଅଣ୍ଡିରା ଗଣ୍ଡାର ଉଚ୍ଚତା ପ୍ରାୟତଃ ୧.୮୫ ମିଟର ଏବଂ ଓଜନ ୨.୩ ଟନ। ମାଈ ଗଣ୍ଡାର ଉଚ୍ଚତା ଏବଂ ଓଜନ ଯଥାକ୍ରମେ ୧.୭ ମିଟର ଏବଂ ୧.୭ ଟନ। ଜାଭାଦେଶର ଗଣ୍ଡାଙ୍କ ଗୋଟିଏ ଶିଙ୍ଘ ଥାଏ। ଏଗୁଡ଼ିକ ଅନ୍ୟ ଗଣ୍ଡା ତୁଳନାରେ ଛୋଟ। ଭାରତୀୟ ଗଣ୍ଡା ଅଧିକାଂଶ ସମୟ ପାଣିରେ ରହିବାକୁ ପସନ୍ଦ କରନ୍ତି।

ଗଣ୍ଡା ଗୁଡ଼ିକର ଶିଙ୍ଘ ମେଣ୍ଢା ଶିଙ୍ଘଠାରୁ ଭିନ୍ନ। ଶିଙ୍ଘର ମଝି ଅଂଶରେ ହାଡ଼ ନଥାଏ। ଖପୁରି ସହିତ ମଧ୍ୟ ଦୃଢ଼ ଭାବରେ ଲାଗି ନଥାଏ। ଗଣ୍ଡାର ଶିଙ୍ଘ ଚମରୁ ସୃଷ୍ଟି ହୁଏ ଏବଂ ସେମାନଙ୍କ ବାଳ ଏବଂ ପଞ୍ଜା ଯେଉଁ ରାସାୟନିକ ପଦାର୍ଥରେ ଗଠିତ ସେହି ପଦାର୍ଥ ମୋଙ୍କ ଶିଙ୍ଘରେ ଦେଖିବାକୁ ମିଳେ। ଆଫ୍ରିକା ମହାଦେଶର ଗଣ୍ଡାର ଶିଙ୍ଘର ଲମ୍ୱା ୧.୬ ମିଟର। ଏମାନଙ୍କର ଦୃଷ୍ଟିଶକ୍ତି ସେତେ ପ୍ରଖର ନୁହଁ। ତେବେ ଏମାନେ ଭଲ ଭାବରେ ଶୁଣି ପାରନ୍ତି। ଅଳ୍ପ ଦୃଷ୍ଟି ଶକ୍ତି ଯୋଗୁଁ ଶତ୍ରୁ ଉପରେ ହଠାତ୍ ଆକ୍ରମଣ କରିବାକୁ ସକ୍ଷମ ହୁଅନ୍ତି ନାହିଁ। କଳା ରଙ୍ଗର ଗଣ୍ଡା ଏବଂ ଭାରତୀୟ ଗଣ୍ଡା ଅନ୍ୟ ଗଣାଙ୍କ ତୁଳନାରେ ହିଂସ୍ର। ଆଫ୍ରିକା ମହାଦେଶର ଗଣା ଶିଙ୍ଘ ସାହାଯ୍ୟରେ ଆକ୍ରମଣ କରନ୍ତି। ଏସିଆ ମହାଦେଶର ଗଣ୍ଡା ଆବଶ୍ୟକ ସ୍ଥଳେ ଶତ୍ରୁକୁ କାମୁଡ଼ି ଦିଅନ୍ତି।

ଗଣ୍ଡାମାନେ ସାଧାରଣତଃ ଏକାକୀ ରହନ୍ତି। ଶାବକ ଗଣ୍ଡା ତା' ମା' ପାଖରେ ଦୁଇ-ତିନିବର୍ଷ ପର୍ଯ୍ୟନ୍ତ ରହେ। ଧଳା ରଙ୍ଗର ଗଣ୍ଡା ଦଳଗତ ଜୀବନଯାପନ କରେ। ଗୋଟିଏ ଦଳରେ ଛ'ରୁ ସାତଟି ଗଣ୍ଡା ରହନ୍ତି। ବୁଢ଼ା ଗଣ୍ଡା ସାଧାରଣତଃ ଏକୁଟିଆ ରହେ। ବୁ-ଗଣ୍ଡା ସ୍ୱତନ୍ତ୍ର ଭାବରେ ତା'ର ରହଣି ସ୍ଥାନ ନିରୂପଣ କରିବା ସମୟରେ ଅନ୍ୟ ଗଣ୍ଡାମାନଙ୍କ ସାଥିରେ ଲଢେଇ କରେ। ଲଢେଇ ମାରାତ୍ମକ। ଲଢେଇ ସମୟରେ ଶୁଣ୍ଢକୁ ଶୁଣ୍ଢ ଲଗାଇ

ଯୁଦ୍ଧ କରନ୍ତି । ଏପରିକି କ୍ରୋଧରେ ଶୁଣ୍ଢ ସାହାଯ୍ୟରେ ମାଟି ଖୋଳିପକାନ୍ତି । ନିଜର ବସତିର ସୀମା ନିଜର ମଳ ଏବଂ ମୂତର ବାସନା ମାଧ୍ୟମରେ ନିର୍ଦ୍ଧାରଣ କରନ୍ତି ।

ମାଈ ଗଣ୍ଡାମାନେ ପାଞ୍ଚ ବର୍ଷରୁ ଦଶବର୍ଷ ପର୍ଯ୍ୟନ୍ତ ଛୁଆ ଜନ୍ମ କରନ୍ତି । ମାଈ ଗଣ୍ଡା ଶାନ୍ତ ପରିବେଶରେ ଛୁଆ ଜନ୍ମ କରେ । ଛୁଆଗୁଡ଼ିକର ଓଜନ ସାଧାରଣତଃ ଚାଳିଶ କିଲୋଗ୍ରାମ । ମା' ଗଣ୍ଡା ଖାଦ୍ୟ ଅନ୍ୱେଷଣରେ ବାହାରକୁ ଯିବା ସମୟରେ ଛୁଆ ଗୁଡ଼ିକୁ ନିର୍ଜନ ସ୍ଥାନରେ ରଖିଦେଇ ଯାଏ । ଭାରତୀୟ ଗଣ୍ଡା ଏବଂ ଧଳାରଙ୍ଗର ଗଣ୍ଡା ଛୁଆଗୁଡ଼ିକ ମା' ମାନଙ୍କ ଆଗେ ଆଗେ ଚାଲନ୍ତି । କଳାରଙ୍ଗର ଗଣ୍ଡା ଛୁଆ ମା' ମାନଙ୍କ ପଛେ ପଛେ ଚାଲନ୍ତି । ଶିଙ୍ଘର ଔଷଧୀୟ ଗୁଣ ସକାଶେ ଶିକାରୀମାନେ ଏଗୁଡ଼ିକୁ ଶିକାର କରନ୍ତି । ଏହି କାରଣରୁ ବର୍ତ୍ତମାନ ଏମାନଙ୍କର ବଂଶ ଲୋପ ହେବାକୁ ବସିଲାଣି ।





# ବେବୁନ

## Baboon

ସ୍ତନ୍ୟପାୟୀଙ୍କ ମଧ୍ୟରେ ''ବେବୁନ୍'' ମାଙ୍କଡ ଜାତୀୟ। ଆଫ୍ରିକାର ପାଣିଥିବା ସ୍ଥାନମାନଙ୍କରେ ଏଗୁଡ଼ିକ ଦେଖାଯା'ନ୍ତି। ଶ୍ରେଣୀ ଭେଦରେ ବେବୁନ ଦୁଇ ପ୍ରକାରରେ ନାମିତ। ଯଥା - ''ହମଦ୍ରିୟାସ ବେବୁନ'' ଏବଂ ''ସଭନାହ ବେବୁନ''। ହମଦ୍ରିୟାସଙ୍କ ଦଳରେ ତିରିଶରୁ ତିନିଶହ ପର୍ଯ୍ୟନ୍ତ ବେବୁନ୍ ଥିବା ଲକ୍ଷ୍ୟ କରାଯାଏ। ଛୋଟ ଛୋଟ ଦଳକୁ ନେଇ (ତିରିଶ ବେବୁନ) ବଡ ଦଳ ଦୃଷ୍ଟି ହୁଏ। ଛୋଟ ଦଳରେ ମାଈ ବେବୁନ, ଅଣ୍ଡିରା ବେବୁନ୍, ସେମାନଙ୍କ ଠାରୁ ଜନ୍ମ ନେଇଥିବା ମାଈ ଛୁଆ ଗୁଡ଼ିକ ରହିଥିବା ଲକ୍ଷ୍ୟ କରାଯାଏ। ସମୟେ ସମୟେ ଅନ୍ୟ ଛୋଟ ଦଳର ଅଣ୍ଡିରା ବେବୁନ ନିଜ ଦଳ ପରିତ୍ୟାଗ କରି ଅନ୍ୟ ଦଳର ମାଈ ବେବୁନ ସହିତ ସମ୍ପର୍କ ରଖିବାକୁ ଚାଲିଆସେ ଏବଂ ସେହି ଦଳରେ ସବୁଦିନ ପାଇଁ ସାମିଲ ହୋଇଯାଏ।

''ସଭନାହ ବେବୁନ''ଙ୍କ ଦଳ ମଧ୍ୟ ଅତି ବିଶାଳ। ଏହି ବେବୁନଙ୍କ ଦଳରେ ଏକାଧିକ ବୟସ୍କ ଅଣ୍ଡିରା ବେବୁନ ରହିଥା'ନ୍ତି। ଇଥୋପିଆରୁ ଦକ୍ଷିଣ ଆଫ୍ରିକା ଘାସୁଆ ଅଞ୍ଚଳ, ଛୋଟ ଛୋଟ ବୁଦାଳିଆ ସ୍ଥାନ ଏବଂ ଜଙ୍ଗଲିଆ ସ୍ଥାନରେ ବାସ କରୁଥିବା ଦେଖାଯାଏ। ସଭନାହ ବେବୁନ ତିନି ଶ୍ରେଣୀର। ଏହି ଶ୍ରେଣୀ ବିଭାଜନ ସେମାନଙ୍କର ଶରୀରର ବିଭିନ୍ନ ରଙ୍ଗ ଉପରେ ନିର୍ଭର କରେ। ଏହି ତିନି ଶ୍ରେଣୀର ବେବୁନ ବିଭିନ୍ନ ଅଞ୍ଚଳରେ ବାସ କରନ୍ତି। ଶ୍ରେଣୀ ଭେଦରେ ଏଗୁଡ଼ିକ ହେଲେ ''ହଳଦିଆ ବେବୁନ୍'', ''ଅଲିଭ ବେବୁନ'' ଏବଂ ''ଚାଓମା ବେବୁନ''।

''ହମଦ୍ରିୟାସ ବେବୁନ'' ଇଥୋପିଆ, ସୋମାଲିଆ, ଲୋହିତ ସାଗର, ସାଉଦି ଆରବ ଏବଂ ଦକ୍ଷିଣ ୟେମେନରେ ବାସ କରନ୍ତି। ସାଧାରଣତଃ ଏଗୁଡ଼ିକ ଅଳ୍ପ ଘାସ ଏବଂ କଣ୍ଟାଳିଆ ବୁଦାଥିବା ପାହାଡରେ ଚଳପ୍ରଚଳ ହୁଅନ୍ତି।

କୁକୁର ପରି ବେବୁନ ଗୁଡ଼ିକର ମୁହଁ ଏବଂ ଥୋମଣି ଅନାବୃତ (ଖୋଲା)। ମାଈ ଏବଂ ଅଣ୍ଡିରା ବେବୁନର ଶରୀର ଆବରଣ ଭିନ୍ନ ପ୍ରକାରର। ବୁଢା ହମଦ୍ରିୟାସ ବେବୁନର ଶରୀରରେ ଧଳା-ପାଉଁଶିଆ ଲମ୍ୱା ବାଳ ଥାଏ। ମାଈ ହମଦ୍ରିୟାସ ଦେଖିବାକୁ ବାଦାମି।

ସେମାନଙ୍କର ମୁହଁର ରଙ୍ଗ ଲିଙ୍ଗ ନିର୍ଣ୍ଣୟ କରିବାରେ ସାହାଯ୍ୟ କରେ। ମାଈ ବେବୁନର ମୁହଁର ରଙ୍ଗ କଳା; ଅଣ୍ଡିରା ବେବୁନର ରଙ୍ଗ ଗାଢ ନାଲି। ଏତଦ୍‌ବ୍ୟତୀତ ଅଣ୍ଡିରା ବେବୁନଙ୍କର ପିଚା ଗାଢ ନାଲି ଦେଖାଯାଏ। ଅଣ୍ଡିରା ବେବୁନ ସାଧାରଣତଃ ଦେଖିବାକୁ



ବେବୁନ୍ Baboon

ବୃହତ୍ତାକାର ଏବଂ ବିକଟ। ଏହାର ମୁହଁ ଦେଖିବାକୁ ନାଲି ଏବଂ ନୀଳ। ମାଈ ବେବୁନ ଆକାରରେ ଅଣ୍ଡିରା ବେବୁନ ଠାରୁ ଅଧା ଏବଂ ମାଈ ଗର୍ଭଧାରଣ ପାଇଁ ଉପଯୁକ୍ତ ହେଲେ ତା'ର ପିଚା ଏବଂ ପେଣ୍ଡା ଫୁଲିଯାଏ। ଏହାପରେ ଅଣ୍ଡିରା ବେବୁନ ତା' ପାଖକୁ ଆସେ।



# ଗିବନ

## Gibbons

ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ମଧ୍ୟରେ ଗିବନ ପାତିମାଙ୍କଡଙ୍କ ବଂଶଧର। ବଙ୍ଗଳାଦେଶରୁ ଭିଏତନାମ ଏବଂ ମାଳୟ ଉପଦୀପରେ ଗିବନ ବାସ କରୁଥିବା ଜଣାଯାଏ। ଏତଦ୍‌ବ୍ୟତୀତ ସୁମାତ୍ରା ଏବଂ ବୋର୍ଣ୍ଣିଓ ଦ୍ୱୀପରେ ମଧ୍ୟ ଦେଖାଯା'ନ୍ତି। ଗିବନ ଆକାରରେ ସିମ୍ପାଞ୍ଜି, ଗରିଲା ଏବଂ ଏସିଆର ''ଓରାଙ୍ଗ ଉଟାନ'', ପାତି ମାଙ୍କଡ ଠାରୁ ଛୋଟ। ମାଈ ଏବଂ ଅଣ୍ଡିରା ଗିବନ ଆକୃତିରେ ସମାନ। ଅନ୍ୟ ପାତିମାଙ୍କଡ ପରି ଏମାନଙ୍କର ଲାଞ୍ଜ ନାହିଁ। ଏମାନଙ୍କ ବାହୁଗୁଡ଼ିକ ଲମ୍ବା। ଏମାନେ ସିଧା ସଳଖ ଠିଆ ହୋଇପାରନ୍ତି ଏବଂ ଦୁଇଗୋଡରେ ଚାଲିପାରନ୍ତି। ଗୋଡ ସାହାଯ୍ୟରେ ଗଛର ଡାଳରେ ସହଜରେ ଚାଲିପାରନ୍ତି। ଗଛରେ ଯିବା ସମୟରେ ଝୁଲି ଝୁଲି ଯାଆନ୍ତି।

ପ୍ରାୟ ପ୍ରତ୍ୟେକ ଶ୍ରେଣୀର ଗିବନ ଆକାରରେ ପ୍ରାୟତଃ ସମାନ। କେବଳ ''ସିଆମଙ୍ଗ ଗିବନ'' ଅନ୍ୟ ଗିବନଙ୍କଠାରୁ ଆକାରରେ ଦୁଇଗୁଣ। ଏଗୁଡ଼ିକ ଦେଖିବାକୁ କଳା। ''କ୍ଲସ ଗିବନ'' ମଧ୍ୟ କଳା। କିନ୍ତୁ ''ଅଜିଲ ଗିବନ'' ଦେଖିବାକୁ ସୁନ୍ଦର। ଏମାନେ ଦେଖିବାକୁ ମାଂସ ରଙ୍ଗର। ଏମାନଙ୍କର ଗାଲ ଏବଂ ଭ୍ରୂଲତା ଦେଖିବାକୁ ଗାଢ ହଳଦି, ନାଲି ଏବଂ ବାଦାମି। ଯେ' କୌଣସି ଜାତିର ମାଈ ଏବଂ ଅଣ୍ଡିରା ଗିବନଙ୍କର ରଙ୍ଗ ଭିନ୍ନ ଭିନ୍ନ।

ଅଣ୍ଡିରା ଗିବନ ଗୋଟିଏ ମାଈ ଗିବନକୁ ନିଜର ସଙ୍ଗିନୀ ହିସାବରେ ବାଛେ। ପ୍ରତି ଦୁଇ ତିନି ବର୍ଷରେ ସେମାନଙ୍କର ଛୁଆ ଜନ୍ମ ହୁଅନ୍ତି। ଶାବକ ଗିବନ ବାପା-ମା'ଙ୍କ ସାଥିରେ ପ୍ରାୟ ଛ' ବର୍ଷ ଏକାଠି ବସବାସ କରେ। ଖାଦ୍ୟ ଅନ୍ୱେଷଣ ସମୟରେ ଗିବନ ନିଜ ନିଜଠାରୁ ଅଲଗା ହୋଇଯା'ନ୍ତି। ବିଶ୍ରାମ ଏବଂ ଶୋଇବା ସମୟରେ ସେମାନେ ଏକାଠି ହୁଅନ୍ତି। ଗିବନ ନିଜର ବାସସ୍ଥଳୀ ସୁରକ୍ଷା ଦେବାରେ ଆବଶ୍ୟକ ପଡିଲେ ହିଂସ୍ର ହୋଇପଡେ। ବିପଦ ଆସିଲେ ଅଣ୍ଡିରା ଏବଂ ମାଈ ଗିବନ ଏକାଠି ମିଶି ଗର୍ଜନ କରନ୍ତି। ଗର୍ଜନ କରି ଅନ୍ୟମାନଙ୍କୁ ସତର୍କ କରିଦିଅନ୍ତି। ତାଙ୍କର ଶବ୍ଦ ପ୍ରେରଣ ସଙ୍ଗୀତର ତାଳ ସହିତ ତୁଳନୀୟ ଏବଂ ମଧୁର। ସଙ୍ଗୀତର ପ୍ରକାର ଭେଦରେ ନିର୍ଦ୍ଦିଷ୍ଟ ଶ୍ରେଣୀର ଗିବନକୁ ଅନ୍ୟ ଶ୍ରେଣୀ (ଜାତିର) ଗିବନ ଠାରୁ ଚିହ୍ନଟ କରିହୁଏ। ପ୍ରତ୍ୟେକ ଅଣ୍ଡିରା ଏବଂ ମାଈ ଗିବନ ଯୋଡି ସଙ୍ଗୀତ (ଡୁଏଟ) ବୋଲନ୍ତି। ''କ୍ଲସ'' ଜାତୀୟ ଅଣ୍ଡିରା ଏବଂ ମାଈ ଗିବନ ନିଜେ ନିଜେ ଏକାକୀ ଗୀତ ବୋଲି ଖୁସି ହୁଅନ୍ତି।



# ଜେବ୍ରା

## Zebra

ଜେବ୍ରା ସ୍ତନ୍ୟପାୟୀ। ଏହା ଦେଖିବାକୁ ଘୋଡାପରି। ଘୋଡାର ଶରୀରରେ ଚିତ୍ର ବିଚିତ୍ର ରେଖା ନଥାଏ। ଜେବ୍ରା ଶରୀରରେ ଚିତ୍ର ବିଚିତ୍ର ରେଖା ଦେଖାଯାଏ। ସୁତରାଂ ଜେବ୍ରାକୁ ଚିତ୍ର ବିଚିତ୍ର ରେଖା ଥିବା ଘୋଡା କହିଲେ ଭୁଲ ହେବନାହିଁ। ଜେବ୍ରା ଆଫ୍ରିକାରେ ବାସ କରନ୍ତି। ଶ୍ରେଣୀ ଭେଦରେ ଜେବ୍ରା ତିନି ପ୍ରକାରର। ତିନି ପ୍ରକାରର ଜେବ୍ରା ମଧ୍ୟରେ କୌଣସି ସାମଞ୍ଜସ୍ୟ ଥିବା ପରିଲକ୍ଷିତ ହୁଏ ନାହିଁ। କେତେକଙ୍କ ମତରେ ଜେବ୍ରାର ଚିତ୍ର ବିଚିତ୍ର ରେଖା ଗୁଡ଼ିକ ନିଜ ନିଜର ଚାଲି ଚଳଣ ଉପରେ ନଜର ରଖିବାରେ ସାହାଯ୍ୟ କରେ। ଅନ୍ୟ କେତେକ ମତରେ ଏହି ରେଖାଗୁଡ଼ିକ ଜେବ୍ରାକୁ ଲୁଚାଇ ରଖିବାରେ ସାହାଯ୍ୟ କରେ।

ସମତଳ ଅଞ୍ଚଳରେ ବାସ କରୁଥିବା ଜେବ୍ରାମାନଙ୍କୁ ''ପ୍ଲେନ ଜେବ୍ରା'' କୁହାଯାଏ। ଏଗୁଡ଼ିକ ଦକ୍ଷିଣ ଆଫ୍ରିକା ଏବଂ ପୂର୍ବ ଆଫ୍ରିକାରେ ବାସ କରନ୍ତି। ଏମାନଙ୍କ ଶରୀରର ଚିତ୍ର ବିଚିତ୍ର ରେଖାଗୁଡ଼ିକ କଳା ଏବଂ ଓସାରିଆ। ଏମାନେ ଗୋଟିଏ ସ୍ଥାନରୁ ଅନ୍ୟ ଗୋଟିଏ ସ୍ଥାନକୁ ଘାସ ଖାଇବା ଉଦ୍ଦେଶ୍ୟରେ ଯାଆନ୍ତି। ହଜାର ହଜାର ଜେବ୍ରା ଗୋଟିଏ ଦଳରେ ଅନ୍ୟ ସ୍ଥାନକୁ ଯାଆନ୍ତି। ଅନ୍ୟ ସମୟରେ ସେମାନେ ଛୋଟ ଛୋଟ ଦଳରେ ବିଭକ୍ତ ହୁଅନ୍ତି। ପ୍ରତି ଦଳରେ ଗୋଟିଏ ଅଣ୍ଡିରା ଜେବ୍ରା, ଏକାଧିକ ମାଈ ଜେବ୍ରା ଏବଂ ସେମାନଙ୍କ ଛୁଆ ଥିବାର ଦେଖାଯାଏ। ପର୍ବତରେ ବାସ କରୁଥିବା ଜେବ୍ରାମାନଙ୍କୁ ''ମାଉଣ୍ଟେନ୍ ଜେବ୍ରା'' କୁହାଯାଏ। ଦକ୍ଷିଣ-ପଶ୍ଚିମ ଆଫ୍ରିକାର ଘଞ୍ଚ ଘାସଥିବା ପର୍ବତମାନଙ୍କରେ ''ମାଉଣ୍ଟେନ୍ ଜେବ୍ରା'' ବାସ କରନ୍ତି। ଏମାନଙ୍କର ଚିତ୍ର ବିଚିତ୍ର ରେଖା ଗୁଡ଼ିକ ''ପ୍ଲେନ ଜେବ୍ରାଙ୍କ'' ରେଖାଠାରୁ ଅଣ ଓସାରିଆ। ସେମାନଙ୍କର ଚମ ସାଧାରଣତଃ ଭାଙ୍ଗ ଭାଙ୍ଗ ହୋଇଥାଏ। ଗଳା ତଳକୁ ଗଳାକମ୍ବଳ ଥିବା ଦେଖାଯାଏ। ପାର୍ବତୀୟ ଜେବ୍ରାମାନଙ୍କୁ ଜାତୀୟ ପାର୍କମାନଙ୍କରେ ରଖିବା ଦ୍ୱାରା ସେମାନେ ନିରାପଦରେ ରହନ୍ତି।

''ଗ୍ରେଭି'' ଜେବ୍ରା ଉତ୍ତର-ପୂର୍ବ ଆଫ୍ରିକାରେ ଦେଖାଯାଆନ୍ତି। ଜେବ୍ରାମାନଙ୍କ ମଧ୍ୟରେ ଏମାନଙ୍କ ଆକାର ଅନ୍ୟମାନଙ୍କ ଅପେକ୍ଷା ବଡ। ରେଖାଗୁଡ଼ିକ ସବୁଠାରୁ ବେଶି ଅଣଓସାରିଆ। ଏମାନଙ୍କର କେଶର ଥାଏ ଏବଂ କାନଗୁଡ଼ିକ ଆକାରରେ ବଡ ଏବଂ ଗୋଲାକିଆ। ଛୋଟ ଛୋଟ ଦଳରେ ଏମାନେ ରହିବାକୁ ଭଲପା'ନ୍ତି। ଦେଖିବାକୁ ଅନ୍ୟ ଜେବ୍ରା ତୁଳନାରେ ସୁନ୍ଦର ହୋଇଥିବାରୁ ଛାଲ ସଂଗ୍ରହ କରିବା ଲକ୍ଷ୍ୟରେ ଶିକାରୀ ଏମାନଙ୍କୁ ଶିକାର କରିବା ଦ୍ୱାରା ଏମାନଙ୍କ ସଂଖ୍ୟା ଧୀରେ ଧୀରେ କମି ଆସିଲାଣି। ଏପରି ଅବସ୍ଥା ରହିଲେ ସମୟ ଆସିବ ଏମାନେ ଲୋପ ପାଇଯିବେ।

♦

# କଙ୍ଗାରୁ

## Kangaroos

କଙ୍ଗାରୁ ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ମଧ୍ୟରୁ ଅନ୍ୟତମ। ଶ୍ରେଣୀ ଭେଦରେ ଏଗୁଡ଼ିକ ପଚାଶ ପ୍ରକାରର। ସଂଖ୍ୟାଧିକ ଜାତି ଅଥବା ଶ୍ରେଣୀକୁ ''କଙ୍ଗାରୁ'' ଏବଂ କମ୍ ସଂଖ୍ୟା ଜାତି ବା ଶ୍ରେଣୀକୁ ''ୱାଲାବିଜ'' କୁହାଯାଏ। ଏହାବାଦ୍ ଦଶ ପ୍ରକାରର ଛୋଟ କଙ୍ଗାରୁ ଜାତି ଅଛନ୍ତି; ସେଗୁଡ଼ିକ ''ର୍ୟାଟ କଙ୍ଗାରୁ'' ଏବଂ ''ବେଟଙ୍ଗସ କଙ୍ଗାରୁ'' ନାମରେ ପରିଚିତ। କଙ୍ଗାରୁ ଦ୍ୱିଗର୍ଭୀ; କାରଣ ଏହାର ପେଟରେ ଥଳି (ମୁଣି) ଦେଖିବାକୁ ମିଳେ। ଏହି ମୁଣିରେ ନିଜର ଛୋଟ ପିଲାକୁ ରଖି ବିଭିନ୍ନ ସ୍ଥାନକୁ ଯାତାୟତ କରେ।

ପ୍ରତ୍ୟେକ କଙ୍ଗାରୁର ପଛଗୋଡ ଆଗଗୋଡ ଅପେକ୍ଷା ଯଥେଷ୍ଟ ଲମ୍ବା। କଙ୍ଗାରୁ ଖୁବ୍ ଜୋରରେ ଡେଇଁ ଡେଇଁ ଯାଏ। ଡେଉଁବା ସମୟରେ ଲାଞ୍ଜ ଦ୍ୱାରା ନିଜର ଭାରସାମ୍ୟ ବଜାୟ ରଖେ। ଧୀର ମନ୍ଥର ଗତିରେ ଯିବା ସମୟରେ ଆଗଗୋଡ ଏବଂ ଲାଙ୍ଗୁଡର ସାହାଯ୍ୟ ନିଏ। ଆଗ ଗୋଡ ଏବଂ ଲାଞ୍ଜକୁ ତିନି ପାଦିଆ ଷ୍ଟୁଲ ଆକାରରେ ରଖି ନିଜର ଓଜନକୁ ସମତୁଲ କରେ। ସଙ୍ଗେ ସଙ୍ଗେ ପଛଗୋଡ ଗୁଡ଼ିକ ଆଗକୁ ବାହାର କରେ। ପଛ ଗୋଡଗୁଡ଼ିକୁ ଆଗଗୋଡ ଏବଂ ଲାଞ୍ଜ ସହାୟତା ଦିଏ।

କଙ୍ଗାରୁ ପଛ ପାଦ ଲମ୍ବା ଏବଂ ଅଣଓସାରିଆ। ପାଦର ଉପର ଭାଗରେ ଚାରୋଟି ଆଙ୍ଗୁଳି ଅଛି। ଏଥିରୁ ଦୁଇଟି ଆକାରରେ ବଡ ଏବଂ ଅନ୍ୟ ଦୁଇଟି ଛୋଟ। ଆଙ୍ଗୁଳି ଏକାଠି ମିଶିଥା'ନ୍ତି। ଆଙ୍ଗୁଳି ସାହାଯ୍ୟରେ ନିଜ ଦେହର ଥିବା ଲୋମକୁ କୁଣ୍ଡାଇ ସଜାଇ ରଖନ୍ତି। ଆଙ୍ଗୁଳି ଗୁଡ଼ିକ ପାନିଆ ପରି କାମ କରେ। କଙ୍ଗାରୁର ବୟସ ବଢ଼ିବା ଅନୁସାରେ ଦାନ୍ତ ବାହାରକୁ ବାହାରି ଆସେ ଏବଂ ଆଗଦାନ୍ତ ଗୁଡ଼ିକ ନଷ୍ଟ ହୋଇଯାଏ।

କଙ୍ଗାରୁ ପାକସ୍ଥଳୀ ଖୁବ୍ ବଡ। ସାଧାରଣତଃ ରାତିରେ ଏଗୁଡ଼ିକ ଭୋଜନ କରନ୍ତି।

ନାଲି ରଙ୍ଗର କଙ୍ଗାରୁ ଖୋଲା ସମତଳ ଅଞ୍ଚଳରେ ବାସ କରିବାକୁ ପସନ୍ଦ କରେ। ଏହାର ଶରୀର ବହଳିଆ ଲୋମ ଦ୍ୱାରା ଆଚ୍ଛାଦିତ। ଲୋମାବୃତ୍ତ ଶରୀର ତାକୁ ଗରମ ଏବଂ ଥଣ୍ଡାରୁ ରକ୍ଷା କରେ। ଦିନର ଖରାବେଳେ ବୁଦାଛାଇରେ ବିଶ୍ରାମ କରେ ଏବଂ ଖରା ଚାଲିଗଲେ ଭୋଜନ କରେ। ଖୁବ୍ କମ୍ ପାଣି ପିଏ। ଶୁଖିଲା ପାଗରେ କଅଁଳିଆ ଘାସ ଏବଂ ଶୈବାଳ ଖାଏ।

''ୱାଲରୋ'' ଜାତୀୟ କଙ୍ଗାରୁ ମରୁଭୂମି ଅଞ୍ଚଳର ପ୍ରାଣୀ। ଅଚ୍ଚ ଖାଇ ବଞ୍ଚିବାର କ୍ଷମତା ଏମାନଙ୍କର ଅଛି। ପୂର୍ବ ଏବଂ ପଶ୍ଚିମାଞ୍ଚଳର ପାଉଁଶିଆ ରଙ୍ଗ କଙ୍ଗାରୁ ଜଙ୍ଗଲରେ ବାସ



କଙ୍ଗାରୁ Kangaroo

କରନ୍ତି । ଗଛରେ ଉଠିଥିବା ଘାସକୁ ଏଗୁଡ଼ିକ ଖାଇବା ପାଇଁ ବିଶେଷ ଆଗ୍ରହୀ । ବାରମ୍ବାର ପାଣି ପିଅନ୍ତି । ଛୋଟ ଆକାରର ଓ୍ୱାଲାରୋ କଙ୍ଗାରୁ ବହଳିଆ ଜଙ୍ଗଲରେ ବାସ କରନ୍ତି । ଅଷ୍ଟ୍ରେଲିଆରେ ବାସ କରୁଥିବା ଏହି ଶ୍ରେଣୀର କଙ୍ଗାରୁ ଫଳାହାରୀ । ଏହି କାରଣରୁ ଏମାନଙ୍କୁ ପଶୁପାଳନ କେନ୍ଦ୍ରରେ ଆବଦ୍ଧ କରି ରଖିହୁଏ । ପଶୁ ପାଳନ କେନ୍ଦ୍ରରେ ପାଳିବାର ଲକ୍ଷ୍ୟ ଯୋଗୁଁ ଏମାନଙ୍କର ସଂଖ୍ୟା କମିବାରେ ଲାଗିଛି । ସଂଖ୍ୟା କମିବାର ଅନ୍ୟ କାରଣ ମଧ୍ୟ ଅଛି। ସିଂହ, ବାଘ, କୋକିଶିଆଳି ଇତ୍ୟାଦି ଏମାନଙ୍କ ଶିକାର କରିବା ଦ୍ୱାରା ସଂଖ୍ୟା କମିଯାଉଛି । କେତେକ କଙ୍ଗାରୁ ଉତ୍ତର ଅଷ୍ଟ୍ରେଲିୟା ଏବଂ ନୂଆ ଗିନିର ଉଷ୍ମ-ଆର୍ଦ୍ର ଜଙ୍ଗଲରେ ବାସ କରୁଥିବାର ଦେଖାଯାଏ । ଗଛରେ ରହୁଥିବା କଙ୍ଗାରୁ କ୍ଷିପ୍ର ଗତିରେ ଡେଇଁ ପାରେ । କିନ୍ତୁ ଭୂପୃଷ୍ଠରେ ଏମାନଙ୍କ ଗତି ଧୀର ।

ଅଧିକାଂଶ ଛୋଟ କଙ୍ଗାରୁ ଏକାକୀ ବାସ କରନ୍ତି । ଏମାନଙ୍କ ମଧ୍ୟରୁ ପାଉଁଶିଆ ଏବଂ ନାଲିକଙ୍ଗାରୁ ଦଳଗତ ଜୀବନଯାପନ କରନ୍ତି । ପ୍ରତି ଦଳରେ ଦୁଇରୁ ଦଶ ପର୍ଯ୍ୟନ୍ତ କଙ୍ଗାରୁ ବୁଲାଚଲା କରନ୍ତି । ପ୍ରଚୁର ପରିମାଣରେ ଖାଦ୍ୟ ଥିବା ସ୍ଥାନରେ ଦଳର କଙ୍ଗାରୁ ସଂଖ୍ୟା ଦଶରୁ ଊର୍ଦ୍ଧ୍ୱ । ଅଣ୍ଡିରା କଙ୍ଗାରୁର ଶରୀର ଆକୃତି ମାଈ କଙ୍ଗାରୁର ଶରୀର ଆକୃତିଠାରୁ ପ୍ରାୟ ଦୁଇଗୁଣ । ନାଲି କଙ୍ଗାରୁ ଏବଂ ''ଓ୍ୱାଲୋରୋ କଙ୍ଗାରୁ''ର ଅଣ୍ଡିରା ଏବଂ ମାଈର ରଙ୍ଗ ପରସ୍ପରଠାରୁ ଭିନ୍ନ । କଙ୍ଗାରୁ ମାସକ ମଧ୍ୟରେ ଛୁଆ ଜନ୍ମ କରେ । ଜନ୍ମ ସମୟରେ ଛୁଆ କଙ୍ଗାରୁର ଓଜନ-ଏକଗ୍ରାମ । ଶାବକ କଙ୍ଗାରୁର ବାହୁ ବଡ କିନ୍ତୁ ଗୋଡ ଗୁଡ଼ିକ ଛୋଟ । ଜନ୍ମପରେ ମା' ମୁଣି ଭିତରକୁ ଗୁରୁଣ୍ଡି ଗୁରୁଣ୍ଡି ପଶେ । ମା'ର ଚାରିଟି ଚୁଚୁକ ମଧ୍ୟରୁ ଗୋଟିଏ ଚୁଚୁକକୁ ଶୋଷେ । କେତେ ମାସ ପରେ ମୁଣି ବାହାରକୁ ଆସେ । ମୁଣି ବାହାରକୁ ଆସିବାର କେତେମାସ ପର୍ଯ୍ୟନ୍ତ ମଧ୍ୟ ଚୁଚୁକକୁ ଶୋଷିବାର ଅଭ୍ୟାସ ଚାଲୁରଖିଥାଏ ।





# ଝିଙ୍କ

## Porcupines

ଝିଙ୍କ ଗୁଡିକ ବାଇଶି ଶ୍ରେଣୀର ଏବଂ ସ୍ତନ୍ୟପାୟୀ। ପ୍ରତ୍ୟେକ ଜାତି (ଶ୍ରେଣୀ)ର ଝିଙ୍କର ପର ଏବଂ ମେରୁଦଣ୍ଡ ଥାଏ। ପରଗୁଡ଼ିକ ବଡ। ବିଭିନ୍ନ ଜାତିର ଝିଙ୍କ ଗୁଡ଼ିକର ଆକୃତି ଭିନ୍ନ। ଶରୀରରେ ଥିବା ପର ଏବଂ ମେରୁଦଣ୍ଡ ବାଳର ପରିମାର୍ଜିତ ରୂପାନ୍ତର। ସାଧାରଣତଃ ଏହି ବାଳକୁ ଝିଙ୍କ କାଠି ରୂପେ ଭୁଲବଶତଃ ବିଚାର କରାଯାଏ। ଏହି ବାଳ ଗୁଡ଼ିକର ଲମ୍ୱା-ପଚାଶ ସେ.ମି. ଏବଂ କଳା ଓ ଧଳାରଙ୍ଗର ମିଶ୍ରଣ। ବାଳ ଝିଙ୍କର ଶେଷ ଅଂଶରୁ କାନ୍ଧ ପର୍ଯ୍ୟନ୍ତ ଦେଖାଯାଏ। ଚମଡା ତଳେ ଥିବା ମାଂସପେଶୀକୁ ଫୁଲାଇ ବାଳକୁ ଠିଆକରାଏ। ଝିଙ୍କ ବିପଦ ସମୟରେ ଏହି ବାଳ ଗୁଡ଼ିକୁ ଜୋରରେ ଝାଡିଦିଏ ଏବଂ ଝାଡିବାଦ୍ୱାରା ଶତ୍ରୁ ଦେହରେ ପିଚିହୁଏ। ଏହି ଆଘାତ ଶତ୍ରୁକୁ ଭୀଷଣ ପୀଡା ଦିଏ ଏବଂ ଶତ୍ରୁର ଶରୀରରେ କ୍ଷତ ସ୍ଥାନ ସହଜରେ ଶୁଖେନାହିଁ। ବାଳ ଗୁଡ଼ିକ ବିଷାକ୍ତ ନହେଲେ ମଧ କ୍ଷତ ସ୍ଥାନରେ ବିଷଜ୍ୱାଳାଠାରୁ ଅଧିକ କଷ୍ଟହୁଏ। ବାଳୁଆ ଏବଂ ଚୂଳଥିବା ଝିଙ୍କ ଆଫ୍ରିକା ଏବଂ ଏସିଆ ମହାଦେଶରେ ବାସ କରନ୍ତି। ଭୟଭୀତ ହେଲେ ଲାଞ୍ଜହଲାଏ ଏବଂ ପରଗୁଡ଼ିକୁ ଜୋରରେ ଝଣ ଝର କରେ। ଶତ୍ରୁ ଏହା ଦ୍ୱାରା ଭୟଭୀତ ନହେଲେ, ପଛ ଗୋଡଗୁଡ଼ିକୁ ବାଡାଏ ଏବଂ ଘୁଷୁରୀ ପରି ଶବ୍ଦ କରେ। ପୂର୍ବୋକ୍ତ ସମସ୍ତ ସତର୍କତାର ବିଫଳ ହେଲେ, ଶତ୍ରୁକୁ ଆକ୍ରମଣ କରେ। ଉତ୍ତର ଆମେରିକାରେ ବାସ କରୁଥିବା ଝିଙ୍କ ପର ଗୁଡ଼ିକ ଭିନ୍ନ। ସେଗୁଡ଼ିକର ଲମ୍ୱା-ତିନି ସେ.ମି. ଏବଂ ଟାଣୁଆ ବାଳରେ ଲୁଚିକରି ଥାଏ। ମେରୁଦଣ୍ଡରେ ହୁଗୁଳା ହୋଇ ଲାଗିଥାଏ। ଏହା ପର ଗୁଡ଼ିକ ଝାଡିଦିଏ। ପରଗୁଡ଼ିକୁ ଶତ୍ରୁ ଦେହରେ ଜୋରରେ ଆଘାତ ଦିଏ। ପରଗୁଡ଼ିକ ମୁନିଆ ହୋଇଥିବାରୁ ତୀର ପରି ଯାଇ ଶତ୍ରୁର ଶରୀରକୁ ଆଘାତ କରେ। ଶତ୍ରୁଠାରୁ ନିଜକୁ ରକ୍ଷାକରିବାର ଏହା ସହଜ ଉପାୟ।



# ବଲ୍‌ଗା ହରିଣ

## Reindeer

ବଲଗା ହରିଣ ସ୍ତନ୍ୟପାୟୀ । ଗ୍ରୀନ୍‌ଲାଣ୍ଡ, ସ୍ପିଜବର୍ଜେନ ଉପଦ୍ୱୀପ ଏବଂ ଆର୍ଣ୍ଣଟିକା ଏବଂ ଉତ୍ତରାଞ୍ଚଳର ମହାଦେଶରେ ବାସ କରନ୍ତି। ଆକୃତି ଏବଂ ରଙ୍ଗରେ ଏମାନେ ଭିନ୍ନ। ଆମେରିକାରେ ଦେଖାଯାଉଥିବା ବଲ୍‌ଗା ହରିଣକୁ ''କାରିବଉ'' କୁହାଯାଏ। ଇଉରୋପରେ ବଲ୍‌ଗା ହରିଣ ଏବଂ ଇଉରୋପରେ ଆଂଶିକ ପ୍ରଶିକ୍ଷଣ ପାଇବା ବଲଗାକୁ ''ଲାପ୍‌ସ'' କୁହାଯାଏ। ଅଣ୍ଡିରା ଏବଂ ମାଈ ବଲ୍‌ଗା ହରିଣର ଶିଂଘ ସେମାନଙ୍କର ବୈଶିଷ୍ଟ୍ୟ। ଅଣ୍ଡିରା ହରିଣର ଶିଂଘ ଖୁବ୍ ଲମ୍ବା ଏବଂ ବହୁ ଶାଖା ବିଶିଷ୍ଟ। ମାଈ ହରିଣ ନିଜ ନିଜ ମଧ୍ୟରେ କଳହ ସମୟରେ ଶିଂଘ ବ୍ୟବହାର କରନ୍ତି ନାହିଁ। ଶୀତ ଦିନରେ ବରଫକୁ ଖଣ୍ଡ ଖଣ୍ଡ କରି ବରଫ ଭିତରୁ ଖାଦ୍ୟ ସଂଗ୍ରହ କରିବାରେ ମାଈ ହରିଣ ଶିଂଘ ବ୍ୟବହାର କରିଥାଏ। ଏହି ହରିଣ ଗୁଡ଼ିକ ନିଜର ଲମ୍ବାଳିଆ ଗୋଡ ସାହାଯ୍ୟରେ ଗାତକୁ ଖୋଳି ଖାଦ୍ୟ ସଂଗ୍ରହ କରନ୍ତି। ଶିଂଘଗୁଡ଼ିକ ଲମ୍ବା ବେଣ୍ଟଥିବା କୋଦାଳ ସଦୃଶ ଦେଖାଯାଉଥିବାରୁ ଏମାନଙ୍କୁ ''କାରିବଉ'' ନାମରେ ନାମିତ କରାଯାଇଛି।

ଶୀତ ଦିନରେ ଆର୍ଣ୍ଣଟିକା ପାଖାପାଖି ଉତ୍ତର ଭାଗରେ ଥିବା ଜଙ୍ଗଲରେ ବାସ କରନ୍ତି। ବସନ୍ତ ଋତୁରେ ତୁନ୍ଦ୍ରା ଅଞ୍ଚଳକୁ ଚାଲିଯା'ନ୍ତି। ଏଠାରେ ଶିଉଳି ଏବଂ ବିଭିନ୍ନ ରକମର ଘାସ ଖାଇ ବଞ୍ଚନ୍ତି। ଶରତ ଋତୁରେ ପୁନର୍ବାର ଆର୍ଣ୍ଣଟିକାକୁ ଫେରିଯା'ନ୍ତି।

ସ୍ଥାନାନ୍ତରିତ ସମୟରେ ଦଳ ଦଳ ହୋଇ ହଜାର ହଜାର ସଂଖ୍ୟାରେ ଗୋଟିଏ ସ୍ଥାନରୁ ଅନ୍ୟସ୍ଥାନକୁ ଯା'ନ୍ତି। ଦିନକରେ ୧୬୦ କି.ମି. ଚାଲିବାର କ୍ଷମତା ଏମାନଙ୍କର ଅଛି। ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବା ସମୟରେ ପୂର୍ବ ନିର୍ଦ୍ଧାରିତ ରାସ୍ତାରେ ସଦା ସର୍ବଦା ଯାତାୟତ କରନ୍ତି। ଗଧିଆ ଏବଂ ଅନ୍ୟ ଶତ୍ରୁ ସେମାନଙ୍କ ସ୍ଥାନାନ୍ତରିତ ସମୟରେ ପିଛା କରନ୍ତି। କେତେକ ବଲଗା ବର୍ଷ ତମାମ ନିର୍ଦ୍ଦିଷ୍ଟ ଗୋଟିଏ ସ୍ଥାନରେ ରହିବାକୁ ପସନ୍ଦ କରନ୍ତି। ଅନ୍ୟ ଜାତିର ହରିଣର ନାକର ଶେଷ ଭାଗ ଚିକ୍‌କଣ ଏବଂ ଓଦାଳିଆ। କିନ୍ତୁ ବଲଗା ହରିଣଙ୍କର ନାକ ଲୋମଦ୍ୱାରା ଆବୃତ୍ତ। ଲୋମଶ ନାକ ଶୀତର ପ୍ରାଦୁର୍ଭାବରୁ ରକ୍ଷାକରେ। ବଲ୍‌ଗା ହରିଣର ଶରୀରରେ ଗହଳିଆ ଲୋମ ଥାଏ। ସେମାନଙ୍କ ଶରୀର ବାଳଦ୍ୱାରା ଆବୃତ୍ତ। ଏଗୁଡ଼ିକ ଲମ୍ବା, ସିଧା ଏବଂ ଫମ୍ପା।

ଗ୍ରୀଷ୍ମ ଋତୁରେ ମାଈ ବଲଗା ଛୁଆ ଜନ୍ମକରେ। ଇଉରୋପରେ ଏମାନଙ୍କୁ ଶିକ୍ଷା ଦିଆଯାଇ ବିଭିନ୍ନ କାମରେ ଲଗାଯାଏ। ବିଭିନ୍ନ କାରଣରୁ ବଲଗା ହରିଣର ସଂଖ୍ୟା ଧୀରେ ଧୀରେ କମିବାରେ ଲାଗିଛି। ଏହା ଏମାନଙ୍କ ପ୍ରତି ଏକ ବିପଦ।

♦

# ହାତୀଆ ମୂଷା

## Elephant Shrews

ହାତୀଆ ମୂଷା ସ୍ତନ୍ୟପାୟୀ। ନାଁ ଅନୁସାରେ ଏମାନେ ହାତୀ ଏବଂ ମୂଷା ପରି ଦେଖିବାକୁ ନୁହଁନ୍ତି। ଏମାନେ କୀଟପତଙ୍ଗ ଭୋଜୀ। ଆଫ୍ରିକା ମହାଦେଶର ପଶ୍ଚିମାଞ୍ଚଳ ବ୍ୟତୀତ ଅଧିକାଂଶ ସ୍ଥାନରେ ବାସ କରନ୍ତି। ହାତୀ ଶୁଣ୍ଢପରି ଥୋମଣି; ଏବଂ ମୂଷା ଖାଉଥିବା ଖାଦ୍ୟ ଏମାନଙ୍କର ହିଁ ଖାଦ୍ୟ। ଥୋମଣିର ହାତି ଶୁଣ୍ଢ ସହିତ ସାମଞ୍ଜସ୍ୟ ଥିବାରୁ ଓ ମୂଷା ଖାଦ୍ୟ ଏମାନଙ୍କର ଖାଦ୍ୟ ହୋଇଥିବାରୁ, ଏମାନଙ୍କୁ ''ହାତୀଆ ମୂଷା'' କୁହାଯାଏ। ମୂଷାଙ୍କଠାରୁ ଆକାରରେ ବଡ। ଆଖିଗୁଡ଼ିକ ଫୁଲିକରି ବାହାରକୁ ବାହାରିଥାଏ। ଗୋଡଗୁଡ଼ିକ ଛୋଟ କୃଷ୍ଣସାର ମୃଗଙ୍କ ଗୋଡ ପରି ଲମ୍ବା।

ଜାତି (ଶ୍ରେଣୀ) ଭେଦରେ ହାତୀଆ-ମୂଷା ଦୁଇ ପ୍ରକାର। ଗୋଟିଏ ଜାତି ଆପାରରେ ବଡ ଏବଂ ସୁନେଲି। ଅନ୍ୟ ଜାତିଟି ଆକାରରେ ଛୋଟ ଏବଂ କାଳିଆ। ଛୋଟ ହାତୀଆ ମୂଷାର ଆକାର ଚୁଟିଆ ମୂଷା ଆକରର। ବଡ ହାତୀଆ ମୂଷା ଆକାରରେ ବଡ ମୂଷାଠାରୁ ବଡ।

ହାତୀଆ-ମୂଷାଙ୍କର ଲମ୍ବାଗୋଡ ଶୀଘ୍ର ଧାଇଁବାରେ ସାହାଯ୍ୟ କରେ। ବଡ ଆକୃତିର ହାତୀଆ ମୂଷା (ଗୋଲ୍ଡେନ-ରମ୍ପଡ) ଶତ୍ରୁ କବଳରୁ ରକ୍ଷା ପାଇବା ସକାଶେ ଘଣ୍ଟାକୁ ପଚିଶ କିଲୋମିଟର ବେଗରେ ଧାଇଁପାରେ। ଛୋଟ ଆକୃତିର ହାତୀଆ-ମୂଷା (ରୋଫସ) ପାଦ ଚିହ୍ନଦ୍ୱାରା ନିଜର ବସତି ଅଞ୍ଚଳକୁ ନିର୍ଦ୍ଧାରଣ କରେ। ଏହି ରାସ୍ତା ବା ବସତିରୁ ଅଳିଆ ଆବର୍ଜନା ସଫାକରେ। ରାସ୍ତା ସଫା ରହିବା ଦ୍ୱାରା ଦରକାର ସମୟରେ କ୍ଷିପ୍ର ଗତିରେ ଧାଇଁ ପରେ। ଏଗୁଡ଼ିକୁ ଶିକାରୀ ଧରିବାକୁ ଚେଷ୍ଟା କରିବା ସମୟରେ ଜୀବନ ମରଣ ସଂଘର୍ଷ କରନ୍ତି।

ହାତୀଆ-ମୂଷା ହଳ ହଳ ହୋଇ ବାସ କରନ୍ତି। ଏହି ହଳ (ଦଳ) ରେ ଗୋଟିଏ ଅଣ୍ଡିରା ଏବଂ ଗୋଟିଏ ମାଈ ହାତୀଆ-ମୂଷା ଥାଏ। ଅଣ୍ଡିରା ଏବଂ ମାଈ ହାତୀଆ-ମୂଷା ଦେଖିବାକୁ ଏକା ପ୍ରକାର। ଉଭୟେ ବସତି ସଫା କରନ୍ତି। ଅଣ୍ଡିରା ହାତୀଆ-ମୂଷା ଅନ୍ୟ ଅଣ୍ଡିରା ହାତୀଆ-ମୂଷା ସାଥିରେ ଏବଂ ମାଈ ହାତୀଆ-ମୂଷା ଅନ୍ୟ ମାଈ ହାତୀଆ-ମୂଷା ସହିତ ଲଢେଇ କରେ। ଏହା ଏକ ବୈଚିତ୍ର୍ୟ। ଅଣ୍ଡିରା ଏବଂ ମାଈ ହାତୀଆ-ମୂଷା ଯୋଡି ସବୁ ସମୟରେ ଏକାଠି ରହନ୍ତି ନାହିଁ। କିନ୍ତୁ ନିଜ ବସତିର ଅନ୍ୟମାନଙ୍କ ସହିତ ସମ୍ପର୍କ ରଖିଥା'ନ୍ତି ମଝିରେ ମଝିରେ ଅନ୍ୟମାନଙ୍କ ସହିତ ସମ୍ପର୍କ ରଖିବା ପାଇଁ



ହାତୀଆ ମୂଷା Elephant Shrews

ଭୂଇଁରେ ବାଡେଇ ହୁଅନ୍ତି ଏବଂ ପଛ ଗୋଡ ଗୁଡ଼ିକରେ ଢୋଲ ବା ଡେଙ୍ଗୁରା ପିଟିଲେ ଯେଉଁ ଶବ୍ଦ ସୃଷ୍ଟି ହୁଏ ସେହି ଶବ୍ଦ ସୃଷ୍ଟି କରନ୍ତି।

ଶାବକ ହାତୀଆ-ମୂଷାଙ୍କର ଜନ୍ମ ସମୟରେ ଶରୀରର ଗଠନ ପୂର୍ଣ୍ଣାଙ୍ଗ ହୋଇଥାଏ। ଏପରିକି ଆଖି ଖୋଲିଯାଇଥାଏ। ଜନ୍ମ ହେବାର ଦିନେ ଦୁଇଦିନ ମଧ୍ୟରେ ମା' ସହିତ ବସାରୁ ବାହାରକୁ ବାହାରିପାରନ୍ତି। କେନିୟାର ଅଧିବାସୀ ଏମାନଙ୍କ ମାଂସ ଖାଇବା ଲକ୍ଷ୍ୟରେ ଶିକାର କରନ୍ତି। ଜଙ୍ଗଲି ହାତୀଆ-ମୂଷାଙ୍କର ବସା ବିଭିନ୍ନ କାରଣରୁ ନଷ୍ଟ ହେଉଥିବାରୁ ନିରାପଦ ବାସସ୍ଥଳୀ ନିରୂପଣ କରିବାରେ ଅସୁବିଧା ହେବା ସ୍ୱାଭାବିକ।



# ପ୍ଲାଟିପସ୍

## Platipus

ପ୍ଲାଟିପସ ସ୍ତନ୍ୟପାୟୀ। ଅଣ୍ଡିରା ପ୍ଲାଟିପସ ବିଷାକ୍ତ। ପ୍ଲାଟିପସ ଅନ୍ୟ ସ୍ତନ୍ୟପାୟୀଙ୍କ ଠାରୁ ଗୋଟିଏ ଗୁଣରେ ଭିନ୍ନ। ଏଗୁଡ଼ିକ ଅଣ୍ଡା ଦିଅନ୍ତି ଏବଂ ଅଣ୍ଡାକୁ ଉଷୁମ କରି ଛୁଆ ପ୍ରଜନନ କରିନ୍ତି। ଛୁଆ ଜନ୍ମ ହେବା ପରେ ପରେ ମା'ର କ୍ଷୀର ପିଏ। ଅଣ୍ଡିରା ପ୍ଲାଟିପସର ବିଷରେ କୁକୁର ମରିଯାଏ। ପ୍ଲାଟିପସର ବିଷ ମଣିଷଙ୍କ ଶରୀରେ ଲାଗିଲେ, ଭୀଷଣ ଜ୍ୱାଳା ହୁଏ।

ପ୍ଲାଟିପସ ପୂର୍ବ ଅଷ୍ଟ୍ରେଲିୟାରେ ବାସ କରନ୍ତି। ନଈ ଏବଂ ହ୍ରଦ ନିକଟରେ ଥିବା ଗାତ ଏମାନଙ୍କ ବାସସ୍ଥଳୀ। ଅଧିକାଂଶ ସମୟ ପାଣିରେ ବିତାଇଥା'ନ୍ତି। ପ୍ଲାଟିପସର ଗୋଡଗୁଡ଼ିକ ଛୋଟ। ସ୍ଥଳ ଭାଗରେ କଷ୍ଟରେ ଚଲେ। ପାଣିରେ ଖୁସି ମିଜାସରେ କ୍ଷିପ୍ର ଗତିରେ ଯାଏ। ଏମାନଙ୍କର ଶରୀର ଛୋଟ ଗହଳିଆ ଲୋମରେ ଆଚ୍ଛାଦିତ। ଲୋମଗୁଡ଼ିକ ଏମାନଙ୍କର ସୌନ୍ଦର୍ଯ୍ୟ ବଢ଼ାଇଥାଏ। ଶରୀରର ସମ୍ମୁଖ ଭାଗର ପାଦଗୁଡ଼ିକୁ ଲଗାଲଗି କରି ଆଗକୁ ଚାଲେ। ସ୍ଥଳଭାଗରେ ଚାଲିବା ସମୟରେ ପ୍ଲାଟିପସ୍ ସଂଯୁକ୍ତ ସମ୍ମୁଖ ଗୋଡଗୁଡ଼ିକୁ ପଛକୁ ଗୁଡ଼ାଇଦିଏ। ଏହାଦ୍ୱାରା ନଖଗୁଡ଼ିକ ବାହାରକୁ ବାହାରିଆସେ। ପ୍ଲାଟିପସର ଥଣ୍ଡ ରବରପରି କୋମଳ ଚମଡା ଦ୍ୱାରା ଆଚ୍ଛାଦିତ। ପାଣିରେ ଚଳପ୍ରଚଳ ହେବା ସମୟରେ ପ୍ଲାଟିବସର ଥଣ୍ଟଟି ଆଖି ଏବଂ କାନର କାମ କରେ। ଥଣ୍ଡ ସମ୍ବେଦନଶୀଳ। ଥଣ୍ଡ ସାହାଯ୍ୟରେ ନଦୀ ଶଯ୍ୟାର ଖାଦ୍ୟ ଲାର୍ଭାର ବର୍ହିଃଅଂଶକୁ ଥୋମଣି ଦ୍ୱାରା ଅଲଗା କରିଦିଏ। ଥୋମଣି ପଛକୁ ଦୁଇଗାଲରେ ଥିବା ଦୁଇଟି ମୁଣରେ ଏହି ଖାଦ୍ୟକୁ ସାଇତି ରଖେ। ପ୍ଲାଟିପସଙ୍କ ଦାନ୍ତ ନଥାଏ ଗାଲ ପାଖର ମୁଣି ଦୁଇଟିରେ ଥିବା ଶିଙ୍ଘ ମଥାନ ପରି ଦେଖାଯାଏ। ମଥାନ ସାହାଯ୍ୟରେ ସଂଗୃହୀତ ଖାଦ୍ୟକୁ ଛୋଟ ଛୋଟ ଖଣ୍ଡ କରେ। କୀଟ ପତଙ୍ଗର ଲାର୍ଭା, ପୋକ ଇତ୍ୟାଦି ଏମାନଙ୍କ ପ୍ରିୟ ଖାଦ୍ୟ।

ପାଣିରେ ପ୍ଲାଟିପସଙ୍କର ସହବାସ ହୁଏ। ସହବାସ ସମୟ ହୋଇଗଲେ, ମାଈ ପ୍ଲାଟିପସ ଧୀରେ ଧୀରେ ଅଣ୍ଡିରା ପ୍ଲାଟିବସର ନିକଟବର୍ତ୍ତୀ ହୁଏ। ମାଈ ପ୍ଲାଟିପସ ପାଖେଇ ଯିବା ପରେ, ଅଣ୍ଡିରା ପ୍ଲାଟିବସ ପ୍ରଜନନ ପାଇଁ ଗାତଟିଏ ଖୋଳେ। ସେହି ଗାତରେ ଘାସ ଏବଂ ପତ୍ରଦ୍ୱାରା ବସାବାନ୍ଧି ବିଶ୍ରାମ କରେ। ସେହି ବସାରେ ଏକ ସମୟରେ ତିନୋଟି ଅଣ୍ଡା ଦିଏ। ଅଣ୍ଡା ଗୁଡ଼ିକ କଅଁଳିଆ ଏବଂ ଯାଆଁସିଆ। ପ୍ରାୟ ଦଶଦିନ ମଧ୍ୟରେ ଅଣ୍ଡାରୁ ଛୁଆ ବାହାରେ। ଛୁଆ ପ୍ଲାଟିପସ ଗୁରୁଣ୍ଡି ଗୁରୁଣ୍ଡି ମା' ପ୍ଲାଟିପସର ପେଟରେ ଥିବା ସ୍ତନ

ପାଖରେ ପହଞ୍ଚେ। ସ୍ତନ ଶୋଷିବା ଦ୍ୱାରା କ୍ଷୀର ଲୋପ ଦେଇ ବୁହେ। ଲେଶମ କ୍ଷୀର ଦ୍ୱାରା ଭିଜିଯାଏ। ଛୁଆ ଏହି ପ୍ଲାଟିପସ ଲୋକମୁ ଶୋଷି ମନ ମୁତାବକ କ୍ଷୀର ପିଏ।

ସାଧାରଣତଃ ପ୍ଲାଟିପସ ନଦୀ ହ୍ରଦର ତଟ ବା ଦଳରେ ଏକୁଟିଆ ରହିବାକୁ ଭଲପାଆନ୍ତି। ସଂଧ୍ୟା ସମୟରେ ବା ଗୋଧୂଳି ସମୟରେ ଏମାନେ ସାଧାରଣତଃ କାମ କରିବାକୁ ଭଲ ପାଆନ୍ତି।



# ପାଉଁଶିଆ ତିମି

## Grey Whale

ପାଉଁଶିଆ ତିମି ହାଡୁଆ ଏବଂ ସ୍ତନ୍ୟପାୟୀ । ସମୁଦ୍ରର ଛୋଟ ଜୀବ ଏମାନଙ୍କର ଖାଦ୍ୟ । ଏମାନଙ୍କ ଶରୀରରେ ସଦୃଶ ଦେଖାଯାଉଥିବା ଗୋଟିଏ ଅଂଶ ଅଛି ଏହା ସାହାଯ୍ୟରେ ପାଟିରେ ପାଟିଏ ପାଣିରଖି ସମୁଦ୍ର ଜୀବକୁ ଧରେ । ପାଉଁଶିଆ ତିମିର ହାଡ ଅନ୍ୟ ତିମିର ହାଡଠାରୁ ଛୋଟ ଏବଂ କଠିନ । ଅନ୍ୟ ତିମିମାନଙ୍କପରି ଏହାର ଛୁଆ ମା' କ୍ଷୀର ପିଇ ବଞ୍ଚେ । ଦୁଇପ୍ରକାରର ପାଉଁଶିଆ ତିମି ଆର୍କ୍ଟିକା ଏବଂ ଦକ୍ଷିଣ ପ୍ରଶାନ୍ତ ମହାସାଗରରେ ପ୍ରଚଳନ ହେଉଥିବା ଦେଖାଯାଇଛି । ପଶ୍ଚିମାଞ୍ଚଳ ଅଥବା କୋରିୟାର ପାଉଁଶିଆ ତିମି ସାଇବେରିଆ ଏବଂ ଦକ୍ଷିଣ କୋରିଆ ଅଞ୍ଚଳରେ ବସବାସ କରନ୍ତି । ବର୍ତ୍ତମାନ ଏମାନେ ପ୍ରାୟତଃ ଲୋପ ହୋଇଗଲେଣି । ପୂର୍ବାଞ୍ଚଳ ଅଥବା କାଲିଫୋର୍ଣ୍ଣିଆ ପାଉଶିଆ ତିମି ବେରିଙ୍ଗ ସମୁଦ୍ର ଏବଂ ଦକ୍ଷିଣ କାଲିଫୋର୍ଣ୍ଣିଆର ଉପକୂଳବର୍ତ୍ତୀ ଅଞ୍ଚଳରେ ବସବାସ କରନ୍ତି ସଂଖ୍ୟା ପନ୍ଦ ହଜା ମଧ୍ୟରେ ସୀମିତ ।

କାଲିପର୍ଣ୍ଣୀୟ ପାଉଁଶିଆ ତିମି ବର୍ଷକ ମଧ୍ୟରେ କେଡିଏ ହଜାର କିଲୋମିଟର ଦୂରତ୍ୱ ଅତିକ୍ରମ କରିଥାଏ । ଏମାନେ ଉତ୍ତର ଆମେରିକାର ନିକଟବର୍ତ୍ତୀ ଅଞ୍ଚଳରେ ବାସ କରନ୍ତି ଏବଂ ଏକଶହ ମିଟରରୁ କମ ଗଭୀର ଜଳରେ ଯାତାୟତ କରନ୍ତି । ଖରା ଦିନରେ ବେରିଙ୍ଗ ସମୁଦ୍ରର ପାଣି ପିଇ ବଞ୍ଚେ । ଏହି ପାଣିରେ ପୁଷ୍ଟିକର ଖାଦ୍ୟ ଥାଏ । ଏମାନଙ୍କର ଶିଘ୍ର ଶିଘ୍ର ଓଜନ ବଢେ ।

ଚମଡା ତଳେ ବ୍ଲୁଡର ସ୍ତର ସୃଷ୍ଟିକରି ଓଜନ ବଢାଏ । ବ୍ଲୁଡର ସ୍ତରଟିରେ ଶକ୍ତି ସଞ୍ଚିତ ହୋଇରହେ । କାରଣ ଅନ୍ୟସ୍ଥାନକୁ ଯିବା ସମୟରେ ଏଗୁଡ଼ିକ ଖୁବ୍ କମ୍ ଖାଆନ୍ତି ।

ପ୍ରତି ବର୍ଷ ଏଗୁଡ଼ିକ ସ୍ଥାରୁ ଅନ୍ୟସ୍ଥାନକୁ ଯିବା ଏମାନଙ୍କ ଧରାବନ୍ଧା ଅଭ୍ୟାସ । ଶରତ ଋତୁରେ ଦକ୍ଷିଣ ଦିଗକୁ ଯାତ୍ରା କରି ଡିସେମ୍ବର ସୁଦ୍ଧା କାଲିଫୋର୍ଣ୍ଣିଆରେ ପହଞ୍ଚନ୍ତି ।





ପାଉଁଶିଆ ତିମି Grey Whale

ସେଠାରେ ସେମାନଙ୍କ ମଧ୍ୟରେ ସହବାସ ହୁଏ । ମାର୍ଚ୍ଚମାସ ସୁଦ୍ଧା ଉତ୍ତରଦିଗକୁ ଫେରି ଯାଆନ୍ତି ।

ଗର୍ଭଧାରଣ ବର୍ଷକ ପରେ ଛୁଆ ଜନ୍ମହୁଏ । ଛୁଆଗୁଡ଼ିକ ଜନ୍ମ ସମୟରେ ପାଞ୍ଚମିଟର ଲମ୍ବା ହୋଇଥାନ୍ତି । ପ୍ରଥମେ ପ୍ରଥମେ ନିଶ୍ୱାସ ନେବା ଏବଂ ପହଁରିବାରେ ଛୁଆକୁ କଷ୍ଟ ହୁଏ । ଦରକାର ପଡ଼ିଲେ ମା' ତିମି ଛୋଟ ଛୁଆକୁ ଦେହରେ ପଛ ଅଂଶରେ ଅଥବା ଲାଞ୍ଜରେ ଧରି ରଖେ । ମା' ତିମିର ସ୍ତନ ଲୁଚିକରିଥାଏ । ଛୁଆତିମି ମା' ସ୍ତନ ପାଖରେ ପହଞ୍ଚଗଲେ, ମା' ତିମି ଛୁଆ ପାଟିରେ କ୍ଷୀର ଢାଳି ପିଇବାକୁ ଦିଏ । ବସନ୍ତ ଋତୁରେ ଉତ୍ତରାଞ୍ଚଳରେ ପହଞ୍ଚିବା ପର୍ଯ୍ୟନ୍ତ ଛୁଆ ତିମି ମା' ମାନଙ୍କ ପାଖାପାଖି ରହନ୍ତି । ଉତ୍ତରାଞ୍ଚଳରେ ପହଞ୍ଚିବା ସମୟରେ ଛୁଆଗୁଡ଼ିକ ପହଁରିବା ଶିଖିଥାନ୍ତି ।





# ସମୁଦ୍ର ଘୋଡା

## Walrus

''ୱାଲରସ'' ବା ସମୁଦ୍ର ଘୋଡା ସ୍ତନ୍ୟପାୟୀ । ସମୁଦ୍ର ଘୋଡା ଦେଖିବାକୁ ସମୁଦ୍ରରେ ଦେଖାଯାଉଥିବା ବିରାଟକାୟ ଈଷତ ଲାଲ ରଙ୍ଗର ସମୁଦ୍ର ସିଂହ ସଦୃଶ । ଏମାନଙ୍କର ଗୋଡ ନାହିଁ, କିନ୍ତୁ ଡେଣା ଅଛି । ଏହାର ଶରୀର ଘୂରି ବୁଲୁଥିବା ତାକୁଡି ପରି ଗୋଲାକର ଏବଂ ମୋଟା । ଏହା ପହଁରିବାରେ ଧୂରନ୍ଧର । ସମୁଦ୍ରଭିତରେ ଏକାଦିକ୍ରମେ ଦୁଇ ଦିନ ରହିପାରେ । ସମୁଦ୍ର ଘୋଡା ସ୍ଥଳ ଭାଗରେ ଥିବା ସମୟରେ ଆଗଡେଣାରେ ଡେରି ହୋଇ ଠିଆହୁଏ ଏବଂ ପଛ ଡେଣାକୁ ଲୁଚାଇ ଦିଏ । କଷ୍ଟରେ ଚାଲେ । ଚାଲିବା ସମୟରେ ଡେଣାକୁ ଏପାଖ ସେପାଖ ହଲାଏ । ସମୁଦ୍ରଘୋଡୀ ଏବଂ ଅଳ୍ପ ବୟସ୍କ ସମୁଦ୍ରଘୋଡାର ଶରୀର ମଖମଲ କନା ସଦୃଶ କୋମଳ ଆସ୍ତରଣରେ ଆଚ୍ଛାଦିତ । (ଅଣ୍ଡିରା) ସମୁଦ୍ର ଘୋଡାର ଅଳ୍ପ ବାଳ ଥାଏ । କିନ୍ତୁ ଦେଖିବାକୁ ପୁରୁଣା ଚମଡା ବ୍ୟାଗ କୁଞ୍ଚପରି । ଏମାନଙ୍କ ବେକ ଅତିଛୋଟ ଯାହାକି ବେକ କାନ୍ଧ ସହିତ ଯୋଡି ହେଲାପରି ଦେଖାଯାଏ । ଚାରିକୋଣିଆ ଥୋମଡାଟି ଟାଣ ଝାଆଁସିଆ ବାଳ ଦ୍ୱାରା ଆବୃତ । ଉପର ମାଢିରେ ଥିବା ଦାନ୍ତ ଗୁଡ଼ିକ୍ ମଧ୍ୟରୁ ଦୁଇଟି ଦାନ୍ତ ଲମ୍ବା ପ୍ରାୟ ପଞ୍ଚାବନ ସେ.ମି. । ସମୁଦ୍ରଘୋଡା ନିଜର ସମ୍ମୁଖ ଭାଗରେ ଥିବା ଲମ୍ବା ଦାନ୍ତକୁ ଖାଦ୍ୟ ଚୋବାଇବାରେ ବ୍ୟବହାର କରେ ନାହିଁ । ସମୁଦ୍ର ଶଯ୍ୟାରେ ଖଣଏ । ଖାଇବା ସମୟରେ ଖେଣମଣିରେ ଥିବା ଟାଆଁସିଆ ବାଳର ସାହାଯ୍ୟ ନିଏ । ଥୋମଣିରେ ମାଟି ଖୋଳେ । ସମୟେ ସମୟେ ଏଗୁଡ଼ିକ ପାଟିରୁ ଜୋରରେ ପାଣି ଶିକାର ବସା ଉପରକୁ ଫୋପାଡନ୍ତି । ସମ୍ମୁଖ ଦାନ୍ତ ସାହାଯ୍ୟରେ ବରଫଖଣ୍ଡ ଗୁଣ୍ଡ କରନ୍ତି । ଏମାନେ ବଡ ବଡ ଦଳରେ ବାସ କରିବାକୁ ପସନ୍ଦ କରନ୍ତି । ସମ୍ମୁଖ ଭାଗରେ ଦାନ୍ତ ବଡଥିବା ସମୁଦ୍ରଘୋଡା ସମୁଦ୍ରକୂଳରେ ତା' ମନଇଚ୍ଛା ସୁବିଧା ସ୍ଥାନରେ ରହିବା ପାଇଁ ଅନ୍ୟ ମାନଙ୍କ ଉପରେ ଜାହିର କରେ । ସେ' ମାଈ ସମୁଦ୍ରଘୋଡା ସହିତ ବସବାସ କରିବା ପାଇଁ ପ୍ରଥମେ ସୁଯୋଗ ପାଏ । ପାରସ୍ପରିକା କନ୍ଦଳର ବୁଝାମଣା ନହେଲେ, ସମ୍ମୁଖ ଦାନ୍ତ ସାହାଯ୍ୟରେ ପରସ୍ପରକୁ ଆଘାତ କରନ୍ତି ।

ଏସ୍କିମୋମାନେ ସମୁଦ୍ରଘୋଡାର ଚମଡା ଏବଂ ମାଂସ ପାଇଁ ବର୍ଷ ବର୍ଷ ଧରି ଶିକାର କରିଆସୁଛନ୍ତି । ସୁତରାଂ, ସମୁଦ୍ର ଘୋଡାର ବଂଶ ଧୀରେ ଧୀରେ ଲୋପ ହେବା ସ୍ୱାଭାବିକ ।

ଖରା ପୁଉଁଥିବା ସମୟରେ ସେମାନଙ୍କ ରଙ୍ଗ ଗୋଲାପି ହୋଇଯାଇଥାଏ । କାରଣ ଏମାନଙ୍କ ରଖ ସୂର୍ଯ୍ୟଙ୍କ ଉତ୍ତାପ ସଂଗ୍ରହ କରିବା ନିମନ୍ତେ, ଉପରଭାଗକୁ ଚାଲିଆସିଥାଏ ।



ସମୁଦ୍ର ଘୋଡ଼ା Walrus

ସମୁଦ୍ରର ଥଣ୍ଡା ପାଣିରେ ରହିଲେ ରକ୍ତ ଉତ୍ତାପ ରକ୍ଷା କରିବା ନିମନ୍ତେ ଭିତରକୁ ଚାଲିଯାଇଥାଏ।

ଆଣ୍ଟାର୍କଟିକାର ସମୁଦ୍ର, ବିଶେଷ କରି ବରଫ ପାହାଡ ସବୁର ନିକଟରେ ଏମାନେ ବାସ କରିବାକୁ ଭଲ ପାଆନ୍ତି। ସହବାସର ୧୫-୧୬ ମାସ ପର୍ଯ୍ୟନ୍ତ ମାଈ ଘୋଡା ଗର୍ଭଧାରଣ କଲାପରେ ଗୋଟିଏ ଛୁଆ ପ୍ରସବ କରିଥାଏ।

ମାଈ ସମୁଦ୍ରଘୋଡା ଲମ୍ବ ଏବଂ ଓଜନରେ ପୁରୁଷ ଠାରୁ ଅଧିକ। ଏମାନଙ୍କ ଲମ୍ବ ମୁଣ୍ଡଠାରୁ ଲାଞ୍ଜପର୍ଯ୍ୟନ୍ତ ୭.୨ ମିଟର ଏବଂ ଓଜନ ୧୨୧୦ କିଲୋ ହୋଇଥାଏ।

ଦିନବେଳା ବଡ ବଡ ଦଳରେ ଏମାନେ କାର୍ଯ୍ୟ କରିବାକୁ ଭଲ ପାଆନ୍ତି। ଏମାନଙ୍କ ଜୀବନ କାଳ ପ୍ରାୟ ୪୦ ବର୍ଷ।





# ଜିରାଫ

## Girafee

ଜିରାଫର ଶରୀର ବିଭିନ୍ନ ପ୍ରକାରର। ଶରୀରରେ ମଣିଷର ସ୍ତରେଖା ସଦୃଶ ରେଖା (ଗାର) ଦେଖାଯାଏ। ଏହାର ରଙ୍ଗ ଏବଂ ଆକୃତି ଭିନ୍ନ। ଜିରାଫର ବେକ ଲମ୍ବ ଏବଂ ଏଥିରେ ସାତୋଟି ବଡ ହାଡଥାଏ। ବେକ ତୁଳନାରେ ଶରୀରର ଲମ୍ବା କମ। ବେକକୁ ଲମ୍ବାଇବାରେ ବା କମାଇବାରେ ମୁଣ୍ଡକୁ ରକ୍ତ ନିଷ୍କାସିତ ହୁଏ। ଶିରାରେ ଥିବା ଶକ୍ତ କବାଟୀ (ଭାଲଭ) ଏବଂ ରକ୍ତମୁଣା ନମନୀୟ ହୋଇଥିବାରୁ ମୁଣ୍ଡରୁ ରକ୍ତ ପୁନର୍ବାର ବେକକୁ ନିଷ୍କାସିତ ହୋଇପାରେ ନାହିଁ। ଜିରାଫ ବଞ୍ଚିରହେ।

ଜନ୍ମ ସମୟରୁ ଜିରାଫର ଛୋଟ ଶିଂଘ ଥାଏ। ବୟସ ବଢିବା ସାଥ୍ ଶିଂଘଗୁଡ଼ିକର ମୋଟା ଏବଂ ଓଜନିଆ ହୁଏ। ଅଣ୍ଡିରା ଜିରାଫଙ୍କ କ୍ଷେତ୍ରରେ ଏହା ଶୀଘ୍ର ଶୀଘ୍ର ହୁଏ। ଅଣ୍ଡିରା ଜିରାଫର ହାଡ ଦେଖାଯାଏ। ପ୍ଲେଟ ଆକାରର ଖୁରା ସାହାଯ୍ୟରେ ଶତ୍ରୁକୁ ଆକ୍ରମଣ କରେ। ଖୁରା ସାହାଯ୍ୟରେ ନାତ ମାରିଲେ, ସିଂହ ମଧ ଖୁରା ଆଘାତ ସହି ନ ପାରି ମରିଯାଏ। ଶରୀରର ଚମ ବହଳିଆ ଏବଂ କଠିନ। ସିଂହ, କଲାରାପତରା ବାଘ ଏବଂ ଗଧିଆ ବର୍ଷକର ଛୁଆଙ୍କୁ ଆକ୍ରମଣ କରି ଭୋଜନ କରନ୍ତି। ବୟସ ବଢିଲେ ଜିରାଫଙ୍କର ଶତ୍ରୁ ସଂଖ୍ୟା କମିଯାଏ ଏବଂ ନିର୍ଭୟରେ ଚଳପ୍ରଚଳନ କରନ୍ତି।

ଜିରାଫର ଶୁଂଘିବା ଏବଂ ଶୁଣିବା ଶକ୍ତି ଭଲ। ସେ କଣ୍ଟାଳିଆ ଗଛରେ ବେକକୁ ଛନ୍ଦିବା ସମୟରେ କାନପୁଡା କାନ ବନ୍ଦକରେ। ଲମ୍ବା ବେକ ହେତୁ ସମତଳ ଭୂମିରେ ବହୁଦୂର ପର୍ଯ୍ୟନ୍ତ ଦେଖିପାରେ। ଜିରାଫ ସ୍ତନ୍ୟପାୟୀ ପ୍ରାଣୀଙ୍କ ମଧ୍ୟରୁ ଅନ୍ୟତମ। ଶ୍ରେଣୀଭେଦରେ ଏଗୁଡ଼ିକ ଦୁଇ ପ୍ରକାରର। ଦୁଇଟି ହେଲା ''ଜିରାଫ'' ଏବଂ ''ଓକାପି''। ଜିରାଫ ଆଫ୍ରିକା ମହାଦେଶର ସବୁ ଅଞ୍ଚଳରେ ଏବଂ ସାହାରା ମରୁଭୂମିର ଦକ୍ଷିଣାଞ୍ଚଳରେ ବାସ କରନ୍ତି। ''ଓକାପି'' ''ଜୈରୀ'' ଅଞ୍ଚଳରେ ବର୍ଷା ହେଉଥିବା ଜଙ୍ଗଲରେ ବାସ କରନ୍ତି।

ପ୍ରାଣୀମାନଙ୍କ ମଧ୍ୟରେ ଜିରାଫ ସବୁଠାରୁ ଉଚ୍ଚ। ପାଦଠାରୁ ଶିଂଘ ପର୍ଯ୍ୟନ୍ତ ଲମ୍ବା ଛ ଦଶମିକ ଶୂନ ନ' ମିଟର ହୋଇଥିବା ଦେଖାଯାଇଛି। ଅଣ୍ଡିରା ଜିରାଫର ଓଜନ ଏବଂ ଉଚ୍ଚତା ଜିରାଫର ଓଜନ ଏବଂ ଉଚ୍ଚତାଠାରୁ ଅଧିକ। ମାଈ ଜିରାଫର ଉଚ୍ଚତା ଚାରି ଦଶମିକ ପାଞ୍ଚ ମିଟର ମଧ୍ୟରେ ସୀମିତ।

ଅଣ୍ଡିରା ଏବଂ ମାଈ ଜିରାଫଙ୍କର ଖାଇବା ପ୍ରକୃତି ଭିନ୍ନ ଭିନ୍ନ। ଅଣ୍ଡିରା ଜିରାଫ ଖାଇବା ପାଇଁ ଶରୀରକୁ ଉପରକୁ ସିଧା ବଢାଇଦିଏ। ମାଈ ଜିରାଫ ତା'ର କାନ୍ଧ ଉଚ୍ଚତା ପର୍ଯ୍ୟନ୍ତ

ସ୍ଥାନରୁ ଖାଦ୍ୟ ସଂଗ୍ରହ କରେ । ସଂଗୃହୀତ ଖାଦ୍ୟକୁ ଅଣ୍ଡିରା ଏବଂ ମାଈ ଜିରାଫ ନିଜ ନିଜ ମଧ୍ୟରେ ବାଣ୍ଟିକରି ଖାଆନ୍ତି । ଜିରାଫ କଅଁଳିଆ ପତ୍ର, ଡାଳ, ଇତ୍ୟାଦି ଖାଇବାକୁ ପସନ୍ଦ କରେ । ଗଛରେ ମଞ୍ଜୁର ଖୋସା, ଫୁଲ, ଫଳ ଖାଇବାରେ ଧୂରନ୍ଧର । ଜିରାଫର ଓଠ ସର୍ବଦା ଗତିଶୀଳ । ଅର୍ଥାତ୍ ଉଠକୁ ପ୍ରତି ମୁହୂର୍ତ୍ତରେ ହଲାଇଥାଏ । ଓଠ ମାଧ୍ୟମରେ ଖାଦ୍ୟକୁ ପାଟି ଭିତରକୁ ନେଇଆସେ । ଆବଶ୍ୟକ ପଡିଲେ ଜିଭକୁ ପଇଁତାଳିଶ ସେ.ମି. ପର୍ଯ୍ୟନ୍ତ ଲମ୍ବା କରେ ଓ ପଇଁତାଳିଶ ସେ.ମି. ଦୂରସ୍ଥାନରୁ ଖାଦ୍ୟ ସଂଗ୍ରହ କରେ । ହାତୁଆ ଦାନ୍ତ ପାନିଆ ପରି ଦେଖାଯାଏ । ଦାନ୍ତ ସାହାଯ୍ୟରେ ଗଛର ପତ୍ର ଛିଣ୍ଡାଇ ଆଣେ । କଣ୍ଟାଳିଆ ଗଛର ପତ୍ରକୁ ଜିରାଫ ସହଜରେ ହଜମ କରିପାରେ । ପତ୍ର ସହିତ ପାଟି ଭିତରେ କଣ୍ଟା ପଶିଗଲେ ଚିନ୍ତା କରେ ନାହିଁ । କାରଣ କଣ୍ଟା ଗୁଡ଼ିକ ପାଟି ଭିତରେ ଚୋବେଇ ହଜମ କରିଦିଏ । ଗର୍ଭବତୀ ଜିରାଫ ତା'ନିଜ ଚଳପ୍ରଚଳ ଅଞ୍ଚଳରେ ଛୁଆ ଜନ୍ମକରେ । ଜନ୍ମ ପରେ ପରେ ଛୁଆ ଜିରାଫ ଠିଆହୁଏ । ଛୁଆ ଜନ୍ମ କରିସାରି ମାଈ ଜିରାଫ ଅନ୍ୟ ମା' ଜିରାଫ ଏବଂ ତା' ଛୁଆମାନଙ୍କ ପାଖକୁ ନିଜର ଛୁଆମାନଙ୍କୁ ନେଇଯାଏ । ସେଠାରେ ମିଳିମିଶି ନିଜ ନିଜ ଛୁଆଙ୍କ ଭଲ ମନ୍ଦ ବୁଝନ୍ତି । ମଧ୍ୟାହ୍ନରେପିଲାମାନଙ୍କୁ ଛାଡିଦେଇ ମା' ମାନେ ଖାଦ୍ୟ ଯୋଗାଡ କରିବା ପାଇଁ ବିଭିନ୍ନ ସ୍ଥାନକୁ ଚାଲିଯାଆନ୍ତି । ଖାଦ୍ୟ ସଂଗ୍ରହ କରି ପିଲାମାନଙ୍କ ପାଖକୁ ଫେରିଆସନ୍ତି । ଜନ୍ମ ସମୟରେ ଛୁଆ ଜିରାଫର ଉଚ୍ଚତା ଏକଦଶମିକ ଆଠ ମିଟର ହୋଇଥାଏ । ଜନ୍ମର ପ୍ରଥମ ବର୍ଷରେ ପ୍ରତିମାସରେ ଏହାର ଉଚ୍ଚତା ଆଠ ସେ.ମି. ହିସାବରେ ବୃଦ୍ଧି ହୁଏ । ଜିରାଫର ବୟସ ପାଞ୍ଚବର୍ଷ ହେଲେ ପୂର୍ଣ୍ଣ ବୟସ୍କ ହୁଏ । ଆଠବର୍ଷର ଅଣ୍ଡିରା ଜିରାଫ ସହବାସ ପାଇଁ ଯୋଗ୍ୟ ହୁଏ ।

♦



# ସମୁଦ୍ର ଗାଈ

## Sea Cow



ବର୍ତ୍ତମାନ ବଞ୍ଚିଥିବା ସମୁଦ୍ର ଗାଈ ମାନଙ୍କୁ ଚାରିଟି ଜାତିରେ ଚିହ୍ନା ଯାଉଛି । ସେମାନେ ସାଧାରଣତଃ ବିଷୁବ ଅଞ୍ଚଳୀୟ ଜଳରେ ଯେଉଁଠାରେ ସମୁଦ୍ର ଘାସ ପ୍ରଚୁର ପରିମାଣରେ ଦେଖାଯାଏ, ସେଠାରେ ରହିବାକୁ ପସନ୍ଦ କରିଥାନ୍ତି । ସମୁଦ୍ର ଘାସ ସେମାନଙ୍କର ପ୍ରିୟ ଖାଦ୍ୟ । ସମୁଦ୍ର ତଳୁ ସେମାନେ ଘାସ ମୂଳରୁ ଖୋଳି ବାହାର କରନ୍ତି ଏବଂ ତାକୁ ତା'ର ପତ୍ର ସହ ଖାଉଥାଆନ୍ତି । ଏହି କାର୍ଯ୍ୟ ସୁଗମ ହେବାପାଇଁ ସେମାନଙ୍କ ଅନ୍ତଃନଳୀର ଲମ୍ବ ୪୫ ମିଟର ହୋଇଥାଏ ।

ସେମାନେ ଯଦିଓ ପହଁରିବାରେ ଓସ୍ତାଦ୍ ସେମାନେ କ୍ୱଚିତ୍ ଜୋର୍‌ରେ ପହଁରନ୍ତି । ସେମାନଙ୍କର ପଛ ଗୋଡ଼ ନଥିବା ଯୋଗୁ ଆଗ ଗୋଡ଼ ଦୁଇଟି ଷ୍ଟିଅରିଂ କାମ କରିଥାଏ । ଏହା ମଧ୍ୟ ସେମାନଙ୍କୁ ଖାଦ୍ୟ ସଂଗ୍ରହ କରିବାପାଇଁ ସାହାଯ୍ୟ କରିଥାଏ । ଏମାନଙ୍କ ଲାଞ୍ଜ ଚେପଟା ଏବଂ ଏହା ସମତଳ ଭାବେ ରହିଥିବା ହେତୁ ପହଁରିବାରେ ବିଶେଷ ଭାବେ ସାହାଯ୍ୟ କରିଥାଏ ।

ଏମାନଙ୍କ ଚମଡ଼ା ତଳେ ସେମାନଙ୍କ ସମସ୍ତ ଚର୍ବି ଜମାଟ ବାନ୍ଧି ରହିଥାଏ ଏବଂ ଏହା ସେମାନଙ୍କୁ ଉଷୁମ ରହିବାରେ ସାହାଯ୍ୟ କରିଥାଏ । ତଥାପି ସେମାନେ କୋଡିଏ ଡିଗ୍ରୀ ସେଲ୍‌ସିଅସ୍‌ରୁ କମ୍ ତାପମାତ୍ରାରେ ରହିବାକୁ ଘୃଣା କରନ୍ତି । ଏମାନଙ୍କର ଦାନ୍ତ ପଦାକୁ ବାହାରିଥାଏ ଏବଂ ଗୋଟିଏ ନଷ୍ଟ ହୋଇଗଲା ପରେ ଆଉ ଗୋଟିଏ ଦା... ସ୍ଥାନ ପୂରଣ କରିଥାଏ ।

ଏମାନଙ୍କ ମୁଣ୍ଡରୁ ଲାଞ୍ଜ ପର୍ଯ୍ୟନ୍ତ ଲମ୍ବ ୦୨ ମିଟରରୁ ୪.୬ ମିଟର ପର୍ଯ୍ୟନ୍ତ ହୋଇଥାଏ । ଏବଂ ଓଜନ ପ୍ରାୟ ୨୩୦ କିଲୋରୁ ୧୬୦୦ କିଲୋ ପର୍ଯ୍ୟନ୍ତ ହୋଇଥାଏ । ଏମାନଙ୍କ

ଦେହ ଲୋମ ଶୂନ୍ୟ ଏବଂ ଦେହର ରଙ୍ଗ ଧୂସର ଓ ଈଷଦ୍ ବାଦାମୀ । ଏମାନେ ସାଧାରଣତଃ ୩୦ ବା ତଦୁର୍ଦ୍ଧ୍ୱ ବର୍ଷ ବଞ୍ଚି ଥାନ୍ତି । ମାଈ ସମୁଦ୍ର ଗାଈ ୧୨ରୁ ୧୩ ମାସ ଭିତରେ ଗର୍ଭ ଧାରଣ କରେ ଏବଂ ଗୋଟିଏ ମାତ୍ର ଛୁଆ ପ୍ରସବ କରେ । ଗୋଟିଏ ମାଈ ଗାଈ ପଚାଶ ବର୍ଷ ବଞ୍ଚିଲେ ମଧ୍ୟ ମାତ୍ର ୬ଟି ସନ୍ତାନ ପ୍ରସବ କରିଥାନ୍ତି । ସାଧାରଣତଃ ଆଠ ବର୍ଷ ହେଲା ପରେ ମାଈ ଛୁଆଟି ଗର୍ଭଧାରଣର କ୍ଷମତା ପାଇଥାଏ । ଏମାନେ ସାଧାରଣତଃ ଭଦ୍ର ଜନ୍ତୁ ହିସାବରେ ସମ୍ମାନ ପାଇଥାନ୍ତି । ବର୍ଷ ବର୍ଷ ଧରି ଏମାନଙ୍କ ମାଂସ, ତେଲ ଓ ଚମଡ଼ା ପାଇଁ ଶିକାର ହୋଇ ଆସୁଥିଲେ ମଧ୍ୟ ବର୍ତ୍ତମାନ ଜଳର ପରିଷ୍କାର ନିମନ୍ତେ ଏମାନଙ୍କୁ ବ୍ୟବହାର କରାଯାଉଛି ।

ଏମାନେ ବେଳେ ବେଳେ ଶହ ଶହ ସଂଖ୍ୟାରେ ଗୋଟିଏ ଦଳରେ ଦେଖାଯାଉଥିଲେ ମଧ୍ୟ ମୁଖ୍ୟତଃ ଏକୁଟିଆ ରହିବାକୁ ପସନ୍ଦ କରିଥାନ୍ତି । ଅନ୍ୟର କାମରେ ମୁଣ୍ଡ ପୂରେଇବାକୁ ଏମାନେ ଚେଷ୍ଟା କରନ୍ତି ନାହିଁ । ସବୁ କାମ ଧୀରେ ସୁସ୍ଥେ କରିବାକୁ ଏମାନେ ପସନ୍ଦ କରିଥାନ୍ତି ।





# ବଣ୍ୟ ଶୂକର

## Wild Pig

ଆଫ୍ରିକାରେ ତିନିପ୍ରକାରର ବଣ୍ୟ ଶୂକର ଦେଖାଯାଉଥିବା ବେଳେ, ଇଉରୋପ ଏବଂ ଦକ୍ଷିଣପୂର୍ବ ଏସିଆରେ ଚାରି ପ୍ରକାରର ବଣକୁ ଦେଖାଯାଆନ୍ତି । ବର୍ତ୍ତମାନ ଆମେ ଦେଖୁଥିବା ଘୁଷୁରୀର ଜନ୍ମ ଏହି ବଣ୍ୟ ଶୂକରଙ୍କ ଠାରୁ ।

ପ୍ରତ୍ୟେକ ଶୂକରର ଗୋଟିଏ ବଡ଼ ମୁଣ୍ଡ ଏବଂ ଛୋଟ ବେକ ଥାଏ । ସେମାନଙ୍କର ଥୋମଣିଟି ବହୁ ଲମ୍ବା ଏବଂ ନାକଟି ଗୋଟିଏ ଚଳନଶୀଳ ଅସ୍ଥି ଦ୍ୱାରା ସାହାଯ୍ୟ ପ୍ରାପ୍ତ । ନାକର ଶେଷଭାଗଟି ଗୋଲ ଏବଂ ଥାଳିଆ ପରି ଚେପ୍ଟା ।



ଏମାନଙ୍କ ପାଇଁ ନାକଟି ଅତ୍ୟନ୍ତ ଦରକାରୀ ଅଟେ । ବାସନା ବାରିବା ପାଇଁ ଏବଂ ମାଟିତଳୁ ଖାଦ୍ୟ ଖୋଜିବା ପାଇଁ ଏହା ବହୁ ସାହାଯ୍ୟ କରିଥାଏ ।

ଏମାନଙ୍କର ଲାଞ୍ଜଟି ମାଛି ଅଡେଇବା ପାଇଁ ଏବଂ ନିଜର ମାନସିକ ଅବସ୍ଥିତି ସଂପର୍କରେ ଅନ୍ୟକୁ ଜଣାଇବା ପାଇଁ ବ୍ୟବହାର କରିଥାନ୍ତି ।

ଏମାନଙ୍କର ପ୍ରତ୍ୟେକ ପାଦରେ ୪ଟି ଲେଖାଏଁ ଖୁରା ଥାଏ । ବାହାର ଦୁଇଟି ଖୁରା ଛୋଟ ଏବଂ ସାଧାରଣତଃ ଏହା ଭୂମିକୁ ଛୁଇଁ ନଥାଏ ।

ଏମାନେ ଜଙ୍ଗଲରେ ରହିବାକୁ ପସନ୍ଦ କରନ୍ତି । ଘାସ, ପତ୍ର, ମୂଳ, ଫଳ ଇତ୍ୟାଦି ଖାଇବାକୁ ଭଲପାଆନ୍ତି । ଗୋଟିଏ ବଣ୍ୟ ଶୂକର ଦଳ ଯେତେବେଳେ ଗ୍ରାମ ନିକଟରେ ଥିବା ଜମିରେ ପଶନ୍ତି, ସେମାନେ ଗଲାପରେ ଲାଗେ ଯେପରି ଜମିରେ ହଳ



କରାଯାଇଛି । କାରଣ ସେମାନେ ତାଙ୍କ ନାକ ଦ୍ୱାରା ମାଟି ଖୋଳି ଛୋଟ ଛୋଟ ଗଛ ଖାଇଯାଆନ୍ତି ।

ଏମାନେ ମା ଏବଂ ତା'ର ଛୁଆମାନଙ୍କୁ ନେଇ ଦଳ ଗଠନ କରିଥାଆନ୍ତି । ପୁରୁଷ ବଣ୍ୟ ଶୂକର ଏକୁଟିଆ ରହିବାକୁ ଭଲପାଆନ୍ତି କିନ୍ତୁ ବେଳେ ବେଳେ ସେମାନଙ୍କୁ ମଧ ଦଳରେ ଦେଖିବାକୁ ମିଳେ । ସେମାନେ ପାଟିର ଶବ୍ଦଦ୍ୱାରା ନିଜର ଭଲ ଭଲପାଇବା ଜଣାଇ ଦିଅନ୍ତି । ସବୁଠାରୁ ଶକ୍ତିଶାଳୀ ପୁରୁଷ ଶୂକରର ମାଈ ଶୂକର ସହିତ ମିଳନ ହୋଇଥାଏ ।

ମାଈ ଶୂକରଟି ୧୦୦-୧୭୫ ଦିନ ଗର୍ଭ ଧାରଣ ପରେ ଏକାଥରେ ୧-୧୨ ପର୍ଯ୍ୟନ୍ତ ଛୁଆ ଦେଇଥାଆନ୍ତି ।

ସବୁଠାରୁ ଛୋଟ ଜାତିର ମୁଣ୍ଡ ସହ ଦେହର ଲମ୍ବ ୦.୬୬ ମିଟର ହୋଇଥାଏ ଏବଂ ଓଜନ ୬କେ.ଜି. । ସବୁଠାରୁ ବଡ଼ ଲମ୍ବ ୨.୧ ମିଟର ଓଜନ ୨୭୫ କି. ହୋଇଥାଏ । ଏମାନଙ୍କ ଜୀବନ କାଳ ୧୫ବର୍ଷ ।

♦



# ଘୋଡ଼ା

## Horse



ସାଧାରଣତଃ ତିନି ପ୍ରକାର ବଣୁଆ ଘୋଡ଼ା ଏବଂ ବିଭିନ୍ନ ପ୍ରକାରର ପାଳିତ ଘୋଡ଼ା ଦେଖାଯାଆନ୍ତି । ବଣୁଆ ଘୋଡ଼ା ଗୁଡ଼ିକ ଶୁଖିଲା ସମତଳ ଭୂମି ଖୋଲା ଜାଗାରେ ରହିବାକୁ ପସନ୍ଦ କରନ୍ତି । ମରୁଭୂମି ଏବଂ ତୃଣାଞ୍ଚଳ ମଧ୍ୟ ଏମାନଙ୍କର ପ୍ରିୟ । ଇଉରୋପର ସମତଳ ଅଞ୍ଚଳରେ ରହୁଥିବା ଟର୍ଗନ ନାମକ ବଣୁଆ ଘୋଡ଼ା ହେଉଛନ୍ତି ବର୍ତ୍ତମାନର ଗୃହପାଳିତ ଘୋଡ଼ା ମାନଙ୍କର ପୂର୍ବ ପୁରୁଷ ।

ଏମାନେ ତୃଣଭୋଜୀ ହେଲେ ହେଁ ବଳିଷ୍ଠ ବପୁଧାରୀ । ଏମାନଙ୍କର ଲମ୍ବା ଲମ୍ବା ଗୋଡ଼ ଥାଏ ଏବଂ ଗୋଡ଼ି ତଳେ ଶକ୍ତ ଖୁରା ଥାଏ । ଗୋଡ଼ ଗୁଡ଼ିକ ହାଲୁକା ଏବଂ ଜୋର୍‌ରେ ଦୌଡ଼ିବାକୁ ଏମାନଙ୍କୁ ସାହାଯ୍ୟ କରିଥାଏ । ଗୋଟିଏ ଗୋଟିଏ ବଣୁଆ ଘୋଡ଼ା ଘଣ୍ଟାକୁ ପଚାଶ କିଲୋମିଟର ସ୍ପିଡ୍‌ରେ ଦୌଡ଼ି ପାରନ୍ତି ।

ଏମାନଙ୍କ ଦୃଷ୍ଟି ଶକ୍ତି ଅତି ତୀକ୍ଷ୍ଣ । ଏମାନଙ୍କର ଚକ୍ଷୁର ଅବସ୍ଥାନ ଏପରି ଯେ ସେମାନେ ଚତୁର୍ଦ୍ଦିଗରୁ ଆସୁଥିବା ବିପଦକୁ ଦେଖିପାରନ୍ତି । ଏମାନଙ୍କ ଶ୍ରବଣ ଶକ୍ତି ଏବଂ ଘ୍ରାଣ ଶକ୍ତି ମଧ୍ୟ ଅତି ପ୍ରଖର । ଏମାନେ ନିଜର କାନ, ମୁହଁ ଏବଂ ଲାଞ୍ଜର ଅବସ୍ଥିତିକୁ ବଦଳାଇ ନିଜର ମାନସିକ ସ୍ଥିତି ସମ୍ପର୍କରେ ନିଜ ଦଳର ଅନ୍ୟମାନଙ୍କୁ ଜଣାଇଥାନ୍ତି । ଏମାନେ



ଘାସ ଖାଇବାକୁ ଭଲ ପାଉଥିଲେ ମଧ୍ୟ ଗଛର ବକ୍‌କଳ, ପତ୍ର ଏବଂ ବିଭିନ୍ନ ଫଳ ମଧ୍ୟ ଖାଇଥାଆନ୍ତି ।

ସାଧାରଣତଃ ଏମାନଙ୍କ ଲମ୍ବା ୨ମିଟର ପର୍ଯ୍ୟନ୍ତ ହୋଇଥାଏ ଏବଂ ଲାଞ୍ଜର ଦୈର୍ଘ୍ୟ ୪୯ ସେ.ମି. ହୋଇଥାଏ । ଏମାନଙ୍କର ଓଜନ ୨୭୫ ରୁ ୩୦୦ କିଲୋ ମଧ୍ୟରେ ସୀମିତ । ଏମାନେ ପ୍ରାୟ ୨୫ ବର୍ଷ ବଞ୍ଚିଥାନ୍ତି । ମାଈ ଘୋଡୀ ଗୁଡ଼ିକ ସାଢ଼େ ୧୧ମାସ ଗର୍ଭ ଧାରଣ କରିବା ପରେ ଗୋଟିଏ କିମ୍ବା ଦୁଇଟି ଛୁଆ ପ୍ରସବ କରିଥାନ୍ତି । ପ୍ରସବ ପରେ ପରେ ପୁଣି ସେମାନଙ୍କର ପୁରୁଷ ଘୋଡ଼ା ସହିତ ମିଳନ ହୋଇଥାଏ ।





**ଜଳହସ୍ତୀ**

Hippopotamuses

